DPEP

ଜିଲା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ
DISTRICT PRIMARY EDUCATION PROGRAMME

# ଶିକ୍ଷକ ସାଥୀ

## ଦ୍ୱିତୀୟ ଶ୍ରେଣୀ

(ଦ୍ୱିତୀୟ ଶ୍ରେଣୀ ପାଇଁ ଗଣିତ ପୁସ୍ତକ 'ଗଣିତ ଖେଳ' ର ଶିକ୍ଷକ ସହାୟକ ପୁସ୍ତକ)

ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷ
**ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ**
ଓଡ଼ିଶା, ଭୁବନେଶ୍ୱର

# ଶିକ୍ଷକ ସାଥୀ

## (ଦ୍ୱିତୀୟ ଶ୍ରେଣୀ ପାଇଁ ଗଣିତ ପୁସ୍ତକ
## 'ଗଣିତ ଖେଳ' ର ଶିକ୍ଷକ ସହାୟକ ପୁସ୍ତକ)

### ଦ୍ୱିତୀୟ ଶ୍ରେଣୀ

ପରୀକ୍ଷାମୂଳକ ସଂସ୍କରଣ

ପ୍ରକାଶନ ସମୟ - ୨୦୦୩

ଲେଖକ ମଣ୍ଡଳୀ :

ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷଙ୍କ
ଦ୍ୱାରା ନିଯୁକ୍ତ ଲେଖକ ମଣ୍ଡଳୀ

ପ୍ରକାଶକ :

ପ୍ରକଳ୍ପ ନିର୍ଦ୍ଦେଶକ,
ଓଡ଼ିଶା ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ କର୍ତ୍ତୃପକ୍ଷ
ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ, ଭୁବନେଶ୍ୱର

ମୁଦ୍ରଣ :

ସରକାରୀ ପାଠ୍ୟପୁସ୍ତକ ମୁଦ୍ରଣାଳୟ
ଭୁବନେଶ୍ୱର

# ମୁଖବନ୍ଧ

ଡିପିଇପି ତରଫରୁ ଚଳିତ ବର୍ଷ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ପାଇଁ ଶିକ୍ଷଣ କାର୍ଯ୍ୟ ଭିତ୍ତିକ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି । ପୂର୍ବ ପାଠ୍ୟ ପୁସ୍ତକ ଗୁଡ଼ିକ କେବଳ ଦକ୍ଷତା ଉପରେ ଆଧାରିତ ଥିବା ସ୍ଥଳେ ନୂତନ ପାଠ୍ୟପୁସ୍ତକ ଗୁଡ଼ିକ ଦକ୍ଷତା, କାର୍ଯ୍ୟଭିତ୍ତିକ ତଥା ସ୍ୱଶିକ୍ଷଣ ଉପରେ ଆଧାରିତ । ପ୍ରଥମ ଶ୍ରେଣୀରେ ଭାଷା, ଗଣିତ ଓ ପରିବେଶ ଅଧ୍ୟୟନ ପାଇଁ ପୂର୍ବରୁ ପୃଥକ୍ ପୃଥକ୍ ପାଠ୍ୟପୁସ୍ତକ ପ୍ରଚଳିତ ଥିଲା । କିନ୍ତୁ ଏହି ନୂତନ ପାଠ୍ୟପୁସ୍ତକରେ ଉପରୋକ୍ତ, ତିନୋଟି ବିଷୟକୁ ମିଶାଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି । ଏହି ପାଠ୍ୟପୁସ୍ତକର ପ୍ରତ୍ୟେକ ବିଷୟକୁ ପାଠ କଲାପରେ ଛାତ୍ରଛାତ୍ରୀମାନେ ଭାଷା, ଗଣିତ ଓ ପରିବେଶ ସମ୍ପର୍କୀୟ ଆବଶ୍ୟକ ଦକ୍ଷତା ହାସଲ କରିବାରେ ସମର୍ଥ ହେବେ । ସେହିପରି ଦ୍ୱିତୀୟ ଶ୍ରେଣୀର ଭାଷା ଓ ପରିବେଶ ଅଧ୍ୟୟନକୁ ନେଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଥିବା ବେଳେ ଗଣିତ ପାଇଁ ଏକ ସ୍ୱତନ୍ତ୍ର ପାଠ୍ୟ ପୁସ୍ତକ ପ୍ରସ୍ତୁତ ହୋଇଛି । ତୃତୀୟ ଶ୍ରେଣୀର ଭାଷା ଓ ଗଣିତ ପାଇଁ ପୃଥକ ପୃଥକ ପାଠ୍ୟ ପୁସ୍ତକ ପ୍ରସ୍ତୁତ କରାଯାଇଥିବାବେଳେ ସାମାଜିକ ପାଠ ଏବଂ ସାଧାରଣ ବିଜ୍ଞାନକୁ ନେଇ ଏକ ସମନ୍ୱିତ ପାଠ୍ୟପୁସ୍ତକ ପ୍ରସ୍ତୁତ କରାଯାଇଛି ।

ପିଲାମାନେ ସାଧାରଣତଃ ଛବି ପ୍ରିୟ । ସେମାନଙ୍କର ମାନସିକ ଅବସ୍ଥାକୁ ବିଚାର କରି ଏଥିରେ ଛବି ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । ଏହାକୁ ଅଧିକ ଆକର୍ଷଣୀୟ କରିବା ପାଇଁ ଏହାର ପ୍ରଚ୍ଛଦପଟକୁ ବହୁରଙ୍ଗ ବିଶିଷ୍ଟ କରାଯିବା ସଂଗେ ସଂଗେ ଭିତର ପୃଷ୍ଠାଗୁଡ଼ିକୁ ଦ୍ୱିରଙ୍ଗ କରାଯାଇଛି । କେତେକ ପ୍ରସଙ୍ଗକୁ କେବଳ ଚିତ୍ର ମାଧ୍ୟମରେ ଉପସ୍ଥାପନା କରାଯାଇଥିବା ସ୍ଥଳେ ଆଉ କେତେକ ପ୍ରସଙ୍ଗକୁ ଗପ, ଗୀତ ଏବଂ କଥୋପକଥନ ଜରିଆରେ ଉପସ୍ଥାପନ କରାଯାଇଛି ।

ପୂର୍ବ ପାଠ୍ୟପୁସ୍ତକ ସହିତ ଅଭ୍ୟସ୍ତ ଆମର ଶିକ୍ଷକ ଶିକ୍ଷୟିତ୍ରୀମାନେ ନୂତନ ଭାବରେ ପ୍ରସ୍ତୁତ ଏହି ପାଠ୍ୟପୁସ୍ତକକୁ ଶ୍ରେଣୀରେ ଉପସ୍ଥାପନା କରିବାରେ ହୁଏତ କେତେକ ଅସୁବିଧା ଅନୁଭବ କରିପାରନ୍ତି । ସେମାନଙ୍କର ଅସୁବିଧା ଦୂରୀକରଣ ପାଇଁ ଏହି ପୁସ୍ତକଟିର ପରିକଳ୍ପନା ।

ପାଠ୍ୟପୁସ୍ତକରେ କେତେକ ତଥ୍ୟ, ସୂଚନା ଓ ଉଦାହରଣ ଆଦି ରହିବାର ଆବଶ୍ୟକତା ଅନୁଭୂତ ହେଉଥିଲେ ହେଁ ଏହାର କଳେବର ବୃଦ୍ଧି ଆଶଙ୍କାରେ ସେସବୁକୁ ପାଠ୍ୟପୁସ୍ତକରେ ରଖା ନଯାଇ ଏହି ଶିକ୍ଷକ ସହାୟକ ପୁସ୍ତକରେ ସ୍ଥାନିତ କରାଯାଇଛି । ଶିକ୍ଷକ ଶିକ୍ଷୟିତ୍ରୀମାନେ ପାଠ୍ୟ ବିଷୟବସ୍ତୁ ଉପସ୍ଥାପନା ସମୟରେ ଏହାର ଉପଯୋଗ କରି ପାରିବେ ।

କୌଣସି ଏକ ପ୍ରସଙ୍ଗକୁ ପଢ଼ାଇବା ପୂର୍ବରୁ ପ୍ରସଙ୍ଗର ଉଦ୍ଦେଶ୍ୟ, ଏଥିପାଇଁ ଆବଶ୍ୟକ ସମୟ, ପ୍ରସଙ୍ଗର ଉପସ୍ଥାପନା ଶୈଳୀ ଏବଂ ପୂର୍ବ ପ୍ରସ୍ତୁତି ସମ୍ପର୍କରେ ଏଥିରେ ସମ୍ୟକ ସୂଚନା ଦିଆଯାଇଛି ।

ଛାତ୍ରଛାତ୍ରୀମାନେ ଶିକ୍ଷଣ କାର୍ଯ୍ୟରେ ସକ୍ରିୟ ଅଂଶ ଗ୍ରହଣ କରିବା ନିମିତ୍ତ କେତେକ ସକ୍ରିୟାତ୍ମକ କାର୍ଯ୍ୟ, ଚିତ୍ରକାର୍ଡ଼, ଶବ୍ଦକାର୍ଡ଼, ଫ୍ଲାସ୍‌କାର୍ଡ଼, ଅକ୍ଷରକାର୍ଡ଼, ଶବ୍ଦ ଖେଳ, ମାଥ୍‌ସ୍ ଓ ଟାନ୍‌ଗ୍ରାମ୍ ଆଦି ବ୍ୟବହାର କରିବାର କୌଶଳ ସଂପର୍କରେ ମଧ୍ୟ ସୂଚନା ଦିଆଯାଇଛି ।

ସବୁ ସମୟରେ ଶ୍ରେଣୀର ସମସ୍ତ ପିଲାଙ୍କୁ ବ୍ୟକ୍ତିଗତ ଭାବରେ ଦୃଷ୍ଟି ଦେବା କଷ୍ଟକର ହୋଇଥାଏ । ତେଣୁ ସମସ୍ତ ଛାତ୍ରଛାତ୍ରୀ କିପରି ଶିକ୍ଷଣ କାର୍ଯ୍ୟରେ ଅଂଶ ଗ୍ରହଣ କରିପାରିବେ ସେଥିପାଇଁ ଶିକ୍ଷକ ଶ୍ରେଣୀରେ ଦଳଗଠନ କରି ସମସ୍ତଙ୍କୁ କାର୍ଯ୍ୟରେ ନିୟୋଜିତ କରିଥାନ୍ତି । ଏହି ପୁସ୍ତକଟିରେ ଅନେକ ଦଳଗତ କାର୍ଯ୍ୟ ଓ ଏହାର ପରିଚାଳନା ସମ୍ପର୍କରେ ଆଲୋଚନା କରାଯାଇଛି ।

ବିଷୟବସ୍ତୁକୁ ସରସ ଓ ସୁନ୍ଦର ଭାବରେ ଉପସ୍ଥାପନା କରିବା ପାଇଁ ପ୍ରତି ବିଷୟ ନିମିତ୍ତ କି କି ଉପକରଣ ଆବଶ୍ୟକ ତାହାର ସୂଚନା ମଧ୍ୟ ଏଥିରେ ଦିଆଯାଇଛି । ଏତଦ୍ ବ୍ୟତୀତ ଆପଣମାନେ ନିଜ ପରିବେଶରୁ ବିନା ମୂଲ୍ୟ ବା ସ୍ୱଳ୍ପମୂଲ୍ୟର ଅନ୍ୟାନ୍ୟ ଆବଶ୍ୟକ ଉପକରଣ ସଂଗ୍ରହ କରି ବ୍ୟବହାର କରିପାରିବେ ।

ବିଷୟ ବସ୍ତୁକୁ ଭିତ୍ତି କରି କେତେକ ପ୍ରକଳ୍ପ କାର୍ଯ୍ୟର ନମୁନା ମଧ୍ୟ ଏଥିରେ ଦିଆଯାଇଛି । ଏହା ଯଥେଷ୍ଟ ବା ସର୍ବୋତ୍କୃଷ୍ଟ ବୋଲି ଭାବିବା ଉଚିତ୍ ନୁହେଁ । ଏଗୁଡ଼ିକ କରାଇବା ସଙ୍ଗେ ସଙ୍ଗେ ନିଜ ପରିବେଶକୁ ଲକ୍ଷ୍ୟକରି ଏହିଭଳି ଆହୁରି ଅନେକ ପ୍ରକଳ୍ପ କାର୍ଯ୍ୟ ମଧ୍ୟ ଆପଣମାନେ କରିପାରିବେ ।

ଛାତ୍ରଛାତ୍ରୀମାନଙ୍କର ଶିକ୍ଷଣ ଉପଲବ୍ଧି ସ୍ତରର ମୂଲ୍ୟାୟନ ପାଇଁ ଗୋଟିଏ ଶିକ୍ଷା ବର୍ଷରେ କେତୋଟି ଏକକ ପରୀକ୍ଷଣ ତଥା ଷାଣ୍ମାସିକ ଓ ବାର୍ଷିକ ପରୀକ୍ଷା କରାଯିବ ସେ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ଏଠାରେ ସ୍ପଷ୍ଟ କରି ଦିଆଯାଇପାରେ ଯେ ଏହି ସୂଚନା ଗୁଡ଼ିକ ବାଧ୍ୟତାମୂଳକ ନୁହେଁ । ସ୍ଥାନୀୟ ପରିବେଶ ଏବଂ ପରିସ୍ଥିତିକୁ ବିଚାରକୁ ନେଇ ଏଥିରେ ଆବଶ୍ୟକ ପରିବର୍ତ୍ତନ କରିପାରିବେ ।

ଆଶା, ପାଠ୍ୟ ବିଷୟବସ୍ତୁକୁ ଛାତ୍ରଛାତ୍ରୀଙ୍କ ନିକଟରେ ଯଥାର୍ଥ ଭାବରେ ଉପସ୍ଥାପନ କରିବାରେ ଏହି ପୁସ୍ତକଟି ବିଶେଷ ସହାୟକ ହେବ । ଏହାକୁ ବ୍ୟବହାର କରି ଏଥିରେ ଥିବା ଦୋଷ ଦୁର୍ବଳତାକୁ ସୂଚାଇବା ସହ ଏହା କିପରି ଅଧିକ ଉପଯୋଗୀ ହୋଇପାରିବ ସେ ସଂପର୍କରେ ଗଠନ ମୂଳକ ପ୍ରସ୍ତାବ ମାନ ଦେବାପାଇଁ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କୁ ଅନୁରୋଧ ।

ବିଜୟ ଅରୋରା
ପ୍ରକଳ୍ପ ନିର୍ଦ୍ଦେଶକ

# ସୂଚୀପତ୍ର

# ପାଠ ସବୁଠୁ ମିଠା

ସମୟ - ୧୨ ପିରିୟଡ୍



ତିନି ଭଉଣୀ ଘରେ ବସି ପାଠ ପଢୁ ପଢୁ ସ୍କୁଲ୍ କଥା ମନେପଡ଼ିଲା-
ସେମାନେ ତରତର ହୋଇ ବାହାରି ପଡ଼ି କହିଲେ - ''ମା' ଆମେ ସ୍କୁଲ୍‌କୁ ଯାଉଛୁ ।''
ବରା ଛାଣୁ ଛାଣୁ ମା' ପିମ୍ପୁଡ଼ି କହିଲା, ଯିବଯେ,ଜଣକେ ଗୋଟିଏ ଗୋଟିଏ ମିଠା ଡାଲାର
ମିଠା ଗଣି ଦେଇ ଥାକ ଉପରେ ସଜାଇ ଦେଇ ଯାଅ ।

ଯେ ଯାହା ଉପାୟରେ ଗଣି ଚାଲିଲେ-

ସାନ ଭଉଣୀ ଦୁଇ ଦୁଇଟା ଗଣି ଥାକରେ ରଖିବାକୁ ଆରମ୍ଭ କଲା ।
ମଝିଆଁ ଭଉଣୀ ତିନି ତିନିଟା ମିଠା ଗଣି ଥାକରେ ରଖୁଥାଏ ।
ବଡ଼ ଭଉଣୀ ଚାରି ଚାରିଟା ମିଠା ଗଣି ଶୀଘ୍ର ଥାକରେ ସଜାଇ ଦେଇ କହିଲା-
ମା' ପାଞ୍ଚ ପୁଞ୍ଜା ମିଠା ହେଲା । ମୁଁ ଆସୁଛି କହି ସ୍କୁଲ୍‌କୁ ଧାଇଁଲା ।



# ଅଭ୍ୟାସ

୧. ଉଦାହରଣ ଦେଖି ଅନ୍ୟ ଗୁଡ଼ିକ ପୂରଣ କର ।

| | | |
|---|---|---|
| | ୨ଟିଜୋତାରେ ଗୋଟିଏ ହଳ | ୯ ହଳ |
| | ୩ଟି ଚାବିରେ ଗୋଟିଏ ପେନ୍ଥା | ☐ ପେନ୍ଥା |
| | ୫ଟି ଫୁଲରେ ଗୋଟିଏ ତୋଡ଼ା | ☐ ତୋଡ଼ା |
| | ୫ଟି ଫଳରେ ଗୋଟିଏ ପେନ୍ଥା | ☐ ପେନ୍ଥା |
| | ୧୦ଟି ଦିଆସିଲି କାଠିରେ ୧ଟି ଦିଡ଼ା | ☐ ଦିଡ଼ା |
| | ୮ ଟି ମାଳିରେ ଗୋଟିଏ ମାଳ | ☐ ଟି ମାଳ |

୨. ଉଦାହରଣ ଦେଖି ଅନ୍ୟ ଗୁଡ଼ିକ ପୂରଣ କର ।



୧୦ ବା ୧ଦଶ + ୧୦ ବା ୧ଦଶ + ୧୦ ବା ୧ଦଶ = ୩୦ ବା ୩ଦଶ



☐ ☐   ☐ ☐   = ☐ ବା ☐

୩.



ଏମିତି କେତେ ଥର ନେଲେ ବବି
ସବୁ ଫଳ ବୋହି ନେଇ ବଡ଼
ଝୁଡ଼ିରେ ପୂରାଇ ପାରିବ ?

୪.




୫.



## କ'ଣ ଶିଖିବେ

ଦୁଇ-ଦୁଇଟି, ପାଞ୍ଚ-ପାଞ୍ଚଟି ବା ଦଶ ଦଶଟି କରି ଗଣି ଗୋଟିଏ ସେଟ୍‌ରେ ଥିବା ମୋଟ ବସ୍ତୁ ସଂଖ୍ୟା ନିର୍ଣ୍ଣୟ କରିବେ । (ସେଟ୍‌ରେ ମୋଟ୍ ବସ୍ତୁ ସଂଖ୍ୟା ୧୦୦ରୁ ଅଧିକ ହେବ ନାହିଁ)

## ସୂଚନା

- "ପାଠ ସବୁଠୁ ମିଠା" ପ୍ରସଙ୍ଗରେ ୧,୨,୩,୪,୫ ଇତ୍ୟାଦି କ୍ରମରେ ନଗଣି, ଦୁଇ ଦୁଇଟା, ତିନି ତିନିଟା, ପାଞ୍ଚ-ପାଞ୍ଚଟା ଓ ଦଶ ଦଶଟା କ୍ରମରେ ଗଣାଯାଇଛି ।

## ପ୍ରସ୍ତୁତି

- ପିଲାମାନଙ୍କର ଗଣନା ଦକ୍ଷତା ଜାଣିବା ପାଇଁ ଗୋଲି, ମଞ୍ଜି, କାଠି, ପତ୍ର ଇତ୍ୟାଦି ବ୍ୟବହାର କରନ୍ତୁ ।

## ଶିକ୍ଷକଙ୍କ କାର୍ଯ୍ୟ

- ପିଲାମାନଙ୍କୁ ଅର୍ଦ୍ଧ ବୃତ୍ତାକାର ବସାଇ ଉପଯୁକ୍ତ ଶୈଳୀରେ ଗପଟିକୁ କହନ୍ତୁ ।
- ଆବଶ୍ୟକ ସ୍ଥଳେ ଚିତ୍ର ଦେଖାନ୍ତୁ ।
- ଛୋଟ ଛୋଟ ଚିନ୍ତା ଓ ପ୍ରତ୍ୟାଶାମୂଳକ ପ୍ରଶ୍ନ ପଚାରି ପିଲାମାନଙ୍କର ଆଗ୍ରହ ସୃଷ୍ଟି କରନ୍ତୁ ।
- ଗଳ୍ପ ଶେଷରେ ନିମ୍ନ ପ୍ରଶ୍ନ ଗୁଡ଼ିକୁ ପଚାରିବା ପାଇଁ ସୁଯୋଗ ସୃଷ୍ଟି କରାନ୍ତୁ ।
- ସାନ ଭଉଣୀ କେତୋଟି ଲେଖାଏଁ ଗଣିଲା ?
- ମଝିଆଁ ଭଉଣୀ କେତୋଟି ଲେଖାଏଁ ଗଣିଲା ?
- ବଡ଼ ଭଉଣୀ କେତୋଟି ଲେଖାଏଁ ଗଣିଲା ?
- କିଏ ସବୁଠାରୁ ଅଧିକ ଗଣିଲା ?
- ଏହି ଆଲୋଚନା କରିବା ବେଳେ ଶିକ୍ଷକ ପୁଞ୍ଜା, ହଳ ଓ ପାଞ୍ଚଟା ର ଧାରଣାକୁ ଦୃଢ଼ୀଭୂତ କରିବା ପାଇଁ ନିମ୍ନ ଶିକ୍ଷଣ କାର୍ଯ୍ୟଟିକୁ କରିବେ ।

## ଆମେ ଜାଣିବା

- ଦୁଇ ଦୁଇ, ପାଞ୍ଚ ପାଞ୍ଚ ଓ ଦଶ ଦଶ କରି ଶୀଘ୍ର ଗଣାଯାଇ ପାରେ ।

## ଦଳଗତ କାର୍ଯ୍ୟ

## କିଏ ବେଶି ଚତୁର

- ଚାରି ଜଣରେ ଗୋଟିଏ ଦଳ କରାଯିବ ।
- ପ୍ରତି ଦଳକୁ ୨୪ଟି ଗୋଲି ଦିଆଯିବ । ତାକୁ ସେମାନେ ବିଭିନ୍ନ ପ୍ରକାରରେ ସଜାଇବେ । ପ୍ରତ୍ୟେକ ପ୍ରକାରର ସଜ୍ଜୀକରଣକୁ ଲେଖି ରଖିବେ ।
- ଯେଉଁ ଦଳ ସବୁଠାରୁ ବେଶୀ ପ୍ରକାରର ସଜାଇ ପାରିବ ସେହି ଦଳ ବେଶୀ ଚତୁର ବୋଲି ପ୍ରମାଣିତ ହେବ ।
- ପିଲାମାନେ ଦୁଇ-ଦୁଇ, ଚାରି-ଚାରି ଇତ୍ୟାଦ ଯେତେ ପ୍ରକାର ପାର୍ଯ୍ୟାୟକ୍ରମେ ସଜା ଯାଇ ପାରିବ ସଜାଇବାର ସୁଯୋଗ ଦିଆଯିବ ।

## କହ ଭାଇ କେତେ

- ପିଲାମାନଙ୍କୁ ପ୍ରଥମେ ଗୋଲି କରି ଠିଆ କରାଯିବ ।
- ଜଣେ ନେତା ହୋଇ ମଝିରେ ଠିଆ ହୋଇ କହିବେ । "କୁହ ଭାଇ କେତେ ?"
- ପିଲାମାନେ କହିବେ "ଭାଇ କହିବେ କେତେ" ଓ ଗୋଲେଇରେ ରହି ଚାଲିବେ,
- ଭାଇ ବା ଶିକ୍ଷକ ପିଲା ସଂଖ୍ୟାକୁ ଲକ୍ଷ୍ୟ କରି ୨/୩/୫/୧୦ ଇତ୍ୟାଦି କହିବେ ।

- ପ୍ରତି ୪ଜଣ ପିଲାରେ ଗୋଟିଏ ଲେଖାଏଁ ଦଳ କରିବେ
- ପ୍ରତି ଦଳକୁ ୨୦ଟି ଲେଖାଏଁ ଗୋଲି ଦେବେ ।
- ସେମାନେ ପର୍ଯ୍ୟାୟକ୍ରମେ ସେହି ଗୋଲିକୁ ଦୁଇ -ଦୁଇଟା, ପାଞ୍ଚ ପାଞ୍ଚଟା ଓ ଦଶ ଦଶଟି ଗଣି ରଖିବେ ।
- ଯେଉଁ ଦଳ ଠିକ୍ ଭାବରେ ଓ ଶୀଘ୍ର ଗଣି ରଖିବ ସେ ଦଳ ବିଜୟୀ ହେବ ।
- ପାଠ୍ୟ ପୁସ୍ତକ ପ୍ରଦତ୍ତ କାର୍ଯ୍ୟାବଳୀରେ ଥିବା ପ୍ରଶ୍ନ ଗୁଡ଼ିକୁ ପିଲାମାନେ ପାଠ୍ୟ ପୁସ୍ତକରେ ସମାଧାନ କରିବେ ।
- କାର୍ଯ୍ୟାବଳୀ ଗୁଡ଼ିକ ସମାଧାନପରେ ତନଖି କରିବେ ।
- ଅଗ୍ରଗତି କରିନଥିବା ପିଲାମାନଙ୍କ ପାଇଁ ପ୍ରତିକାରମୂଳକ ଶିକ୍ଷଣ କାର୍ଯ୍ୟର ବ୍ୟବସ୍ଥା କରିବେ ।

୨୪ ଜଣ

| | | |
|---|---|---|
| ୩ | ୩ | ୩ |
| ୩ | ରାଜା | ୩ |
| ୩ | ୩ | ୩ |

| | | |
|---|---|---|
| ୪ | ୧ | ୪ |
| ୧ | ରାଜା | ୧ |
| ୪ | ୧ | ୪ |



୨୦ଜଣ

ଉପକରଣ

- ଆବଶ୍ୟକ ପରିମାଣର ଗୋଲି

- ଆବଶ୍ୟକ ସ୍ଥଳେ ପିଲା ସଂଖ୍ୟା କମ୍ କରି ଯେଉଁ ସଂଖ୍ୟା ଦ୍ୱାରା ଠିକ୍ ସଂଖ୍ୟକ ଦଳ ହୋଇ ପାରୁଥିବ କହିବେ ।
- ଶିକ୍ଷକ/ ଭାଇ ଯେଉଁ ସଂଖ୍ୟାଟି କହିବେ ପିଲାମାନେ ସେତିକି ଜଣ ଲେଖାଏଁ ଧରାଧରି ହୋଇ ଠିଆହେବେ ।
- ପିଲାମାନେ ପ୍ରତିଥର କେତେ ଜଣ ଥିଲେ ଓ କେତେ ଦଳ ହୋଇ ଥିଲେ ଲେଖିବେ ।
- ଶିକ୍ଷକ ସେହି ସମ୍ପର୍କରେ ଆଲୋଚନା କରିବେ ।

**ମନେ ମନେ ହିସାବ କରି କୁହ**

- ୧୦ଟି ମଞ୍ଜିକୁ ଦୁଇ-ଦୁଇଟି କରି ଗୋଟିଏ ଲେଖାଏଁ ପୁଡ଼ିଆ କଲେ କେତେ ପୁଡ଼ିଆ ହେବ ?
- ୨୫ଟି ମଞ୍ଜିକୁ ପାଞ୍ଚ-ପାଞ୍ଚଟି କରି ପୁଡ଼ିଆ କଲେ କେତେ ପୁଡ଼ିଆ ହେବ ?

**ରାଜା ଓ ସୈନିକ**

- ଜଣେ ରାଜାଙ୍କୁ ଶୋଇବା ବେଳେ ୨୪ ଜଣ ସୈନିକ ପହରା ଦେଉଥିଲେ । ମଝିରେ ମଝିରେ ରାଜା ଦେଖୁଥିଲେ, ପ୍ରତିଧାଡ଼ିରେ ୬ ଜଣ ଲେଖାଏଁ ଜଗି ରହୁଛନ୍ତି କି ନାହିଁ ।
(ଜଣେ ପିଲା ରାଜା ହୋଇ ମଝିରେ ରହିବେ । ୨୪ ଜଣ ପିଲାକୁ ଶିକ୍ଷକ, ଧାଡ଼ିରେ ୬ ଜଣ ଲେଖାଏଁ ରଖି ସଜାଇବେ ।) ଦିନେ ରାତିରେ ସେନାପତିଙ୍କୁ ଆବଶ୍ୟକ ପଡ଼ିବାରୁ ଚାରିଜଣ ସୈନିକଙ୍କୁ ଅନ୍ୟ କାମରେ ପଠାଇଦେଲେ । ସେ ବୁଦ୍ଧି ଖଟେଇ ଅବଶିଷ୍ଟ ୨୦ ଜଣଙ୍କୁ ଏମିତି ସଜେଇ ଦେଲେ, ଯେମିତିକି ପ୍ରତି ଧାଡ଼ିରେ ୬ ଜଣ ରହିବେ । ରାଜା ରାତିରେ ଉଠି ଗଣିଲେ କିନ୍ତୁ ପ୍ରତି ଧାଡ଼ିରେ ୬ ଜଣ ଥିବାରୁ ଜାଣି ପାରିଲେ ନାହିଁ । ଯଦି ଦୁଇ ଜଣ ସୈନିକ ଅନୁପସ୍ଥିତ ରହିବେ । ତୁମେ ସେନାପତି ହେଲେ କିପରି ସଜେଇ ପାରିବ ?

# ମାଙ୍କଡ଼ ହେଲା ଘୋଡ଼ା

ସମୟ - ୮ ପିରିୟଡ୍



ଆମ୍ବ ତୋଟାରେ ପହଞ୍ଚି ମାଙ୍କଡ଼ ଖପ୍‌କରି ଗଛକୁ ଚଢ଼ି କହିଲା-

''ଗଧ ଭାଇ, ଗଧଭାଇ ଗଛରେ ଚଢ଼ି ଆମ୍ବ ଖାଅ ।''

ଗଧ କହିଲା-''ହଉ ଭାଇ, ତୁ ଆମ୍ବ ଖା'; ମୁଁ ତଳେ ବସିଛି ।''

ମାଙ୍କଡ଼ ଗଛ ଉପରୁ ଖଣ୍ଡିଆ ଆମ୍ବ ପକାଇ କହିଲା- ''ତୁ ତ ଗଛରେ ଚଢ଼ି ପାରିବୁନି- ଆମ୍ବ ପକାଉଛି- ଖା ।''

ଗଧ ଅଇଁଠା ଆମ୍ବ ଦେଖି କହିଲା- ''ହଉ, ମୋ ଆମ୍ବ ଖିଆ ହୋଇଗଲା । ଆସ ଯିବା ।''

ବାଟରେ ଯାଉ ଯାଉ ମାଙ୍କଡ଼ କହିଲା- ''ଠେକୁଆ ଦି'ଟା ଖେଳୁଥିଲେ- ପଳାଇଲେ କାହିଁକି ?''



ଗଧ କହିଲା-''ଚାଲ ସେମାନେ କ'ଣ କିପରି ଖେଳୁଥିଲେ ଦେଖିବା ।''

ଖେଳ ହେଉଥିବା ଜାଗାରେ ପହଞ୍ଚି ମାଙ୍କଡ଼ କହିଲା, '' ଏଇ କେଇଟା ଫୁଲ ତୋଡ଼ା କରି ଖେଳୁଥିଲେ ତ ଆଉ କେଉଁ ନୂଆ କଥା ଯେ ।''

ଗଧ କହିଲା- ''ତୋ ମନକୁ ତ କିଛି ପାଏନି ।

ସେମାନେ ଯେତିକି ଫୁଲ ଘରମାନଙ୍କରେ ରଖି ଖେଳୁଥିଲେ, ତୁ ଗଣି ପାରିବୁ ?''

ମାଙ୍କଡ଼ କହିଲା- ''ପାରିବି; ତୋ ଠାରୁ ଆଗ ଗଣିଦେଇ ପାରିବି ।''

ଗଧ କହିଲା-''ହଉ ଗଣା ହେଉ- କିନ୍ତୁ ମନେ ରଖ-

ଯିଏ ଗଣିବାରେ ହାରିବ, ସେ ଘୋଡ଼ା ହେବ;

ଯିଏ ଜିତିବ ସେ ତା' ପିଠି ଉପରେ ବସିବ ।''

ଗଣା ଚାଲିଲା...............








= ୧୩



= ୧୦ + ୩ = ୧୩

୧ ଦଶ + ୩ ଏକ = ୧୦ + ୩ = ୧୩



= ୨୬



= ୨୦ + ୬ = ୨୬

୨ ଦଶ

୨ ଦଶ ୬ ଏକ = ୨୦ + ୬ = ୨୬

## ଅଭ୍ୟାସ

୧. ହାତୀ ଏହା ପରେ କେତେ ଲେଖିବ ?




୨.



| ଦଶ | ଏକ |
|---|---|
| | |



| ଦଶ | ଏକ |
|---|---|
| | |



| ଦଶ | ଏକ |
|---|---|
| | |



କେଉଁ ଘରେ ବିଲେଇ ପଶିଲେ, ବେଶି
୧୦ ଟିକିଆ ଅଣ୍ଡା ପୁଡ଼ିଆ କରି ପାରିବ ?

୩. ଉଦାହରଣ



୧୦ଟି ପାଖୁଡ଼ାରେ ଗୋଟିଏ ଫୁଲ



୧ଟି ଫୁଲ

ଉଦାହରଣ ଦେଖି ଶୂନ୍ୟସ୍ଥାନ ପୂରଣ କର :-





_______ ଟି ଫୁଲ





_______ ଟି ଫୁଲ



୧୦ଟି ମହମବତିରେ ଗୋଟିଏ ପ୍ୟାକେଟ



୧ ଟି ପ୍ୟାକେଟ





_______ ଟି ପ୍ୟାକେଟ





_______ ଟି ପ୍ୟାକେଟ





_______ ଟି ପ୍ୟାକେଟ

୪.

| ଉଦାହରଣ ଦେଖି ପୂରଣ କର । | ଦଶ | ଏକ |
|---|---|---|
|  | ୧ | ୮ |
|  | | |
|  | | |
|  | | |
|  | | |
|  | | |
|  | | |

| | | |
|---|---|---|
| | | |
| | | |
| | | |

୫. ଚିତ୍ର ମିଳାଇ କୋଠରି ପୂରଣ କର ।

| ଛାଣିବା ପୂର୍ବରୁ ସଂଖ୍ୟା | ଛାଣିବା ପରେ ଦଶ | ଏକ |
|---|---|---|
| ୩୨ | ୩ | ୨ |
| | | |
| | | |
| | | |
| | | |
| | | |
| | | |

# ଗଣିତର ମଜା

ସମୟ - ୬ ପିରିୟଡ୍

ଭଉଣୀ-"ଗିଙ୍କୁ ପରୀକ୍ଷାରେ କେତେ ନମ୍ବର ପାଇଛୁ ?"

ଭାଇ- "ହଉ ମୁଁ ଡାକୁଛି ଲେଖ ।"

"ଗଣିତ- ୭୨

ସାହିତ୍ୟ- ୬୫

ପରିବେଶ-୪୦

ଚିତ୍ରାଙ୍କନ- ୧୮"

ଭାଇ-"ମୁଁ ନମ୍ବର ଡାକୁଛି ତୁ ବସି ଚିତ୍ର କରୁଛୁ ?"

ଭଉଣୀ-"ନାଇଁରେ ତୋ ନମ୍ବର ଲେଖିଛି । ଏଇ ଦେଖୁନୁ- କହୁଛି ।"

"ଗଣିତ- ୭୨

ସାହିତ୍ୟ- ୬୫

ପରିବେଶ-୪୦

ଚିତ୍ରାଙ୍କନ- ୧୮"

ଭାଇ -"ତା ମାନେ ତୁ କହୁଛୁ-"

୭୨=

୧୮=

୪୦=

୬୫=

# ଅଭ୍ୟାସ

୧. ଉଦାହରଣ ଦେଖି ପୂରଣ କର ।

| ଦ | ଏ |
|---|---|
| ୩ | ୪ |

୨. ଖାଲି ଘର ପୂରଣ କର

ଯେପରି - ୩ ଦଶ ୨ ଏକ =

୪ ଦଶ ୬ ଏକ = ☐

୫ ଦଶ ୮ ଏକ = ☐

୭ ଦଶ ୨ ଏକ = ☐

୮ ଦଶ ୨ ଏକ = ☐

୩.

ଯେପରି - ୬୩ = ☐ ଦଶ ☐ ଏକ

୪୭ = ୪ ଦଶ ☐ ଏକ

୩୨ = ☐ ଦଶ ☐ ଏକ

୫୦ = ☐ ଦଶ ☐ ଏକ

୪.

ଯେପରି - ୪୨ = ☐ ଦଶ ☐ ଏକ

୭୫ = ☐ ଦଶ ☐ ଏକ

୭୦ = ☐ ଦଶ ☐ ଏକ

୬୩ = ☐ ଦଶ ☐ ଏକ

୬୦ = ☐ ଦଶ ☐ ଏକ

୭୬ = ☐ ଦଶ ☐ ଏକ

୫. ଉଦାହରଣ ଦେଖି ପୂରଣ କର ।

୩୪ = ୩ ୪

୮୫ = ☐

୬୩ = ☐

୯୭ = ☐

୬ . ଦଶକ ଘରେ ଥିବା ଅଙ୍କକୁ '△' ମଧ୍ୟରେ ରଖ ।

| | |
|---|---|
| ୨ ୮ | ୬ ୦ |
| ୨ ୩ | ୪ ୩ |
| ୫ ୭ | ୭ ୯ |
| ୪ ୧ | ୯ ୨ |

୭ . ଏକକ ସ୍ଥାନରେ ଥିବା ଅଙ୍କଗୁଡ଼ିକୁ ◯ ମଧ୍ୟରେ ରଖ ।

| | |
|---|---|
| ୨ ୮ | ୬ ୦ |
| ୨ ୩ | ୪ ୩ |
| ୫ ୭ | ୭ ୯ |
| ୪ ୧ | ୯ ୨ |

୮ . ଦଶକ ସ୍ଥାନର ଅଙ୍କକୁ □ ରେ ଓ ଏକକ ସ୍ଥାନର ଅଙ୍କକୁ △ ମଧ୍ୟରେ ରଖ ।

| ସଂଖ୍ୟା | ଦଶକ | ଏକକ |
|---|---|---|
| ୨୫ | ୨ | ୫ |
| ୩୦ | | |
| ୬ | | |
| ୪୪ | | |
| ୧୭ | | |

୯ . ଖାଲିସ୍ଥାନ ପୂରଣ କର ।

| ଦଶକ | ଏକକ | ସଂଖ୍ୟା |
|---|---|---|
| ୪ | ୨ | ୪୨ |
| ୫ | ୦ | ୫୦ |
| ୧ | ୦ | |
| ୭ | ୬ | |
| ୮ | ୨ | |
| ୯ | ୯ | |

୧୦. ବଡ଼ ପାତ୍ରରେ ଥିବା ସଂଖ୍ୟାଗୁଡ଼ିକ ମଧ୍ୟରୁ ଦୁଇଟି ଅଙ୍କରେ ଗଢ଼ା ସଂଖ୍ୟାଗୁଡ଼ିକ କାହାଲୀ ମଧ୍ୟରେ ଓ ଗୋଟିଏ ଅଙ୍କରେ ଗଢ଼ା ସଂଖ୍ୟାଗୁଡ଼ିକୁ ତଳ ପାତ୍ରରେ ଲେଖ ।



## କ'ଣ ଶିଖିବେ

- ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାର ସ୍ଥାନୀୟମାନ ବୁଝିବେ ।
- ୨୧ ରୁ ୯୯ ପର୍ଯ୍ୟନ୍ତ ସଂଖ୍ୟାକୁ ଦଶକ ଓ ଏକକରେ ବିସ୍ତାରିତଭାବେ ପ୍ରକାଶ କରିବେ ଏବଂ ସେହି ବିସ୍ତାରିତ ଆକାରକୁ ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାଭାବେ ପ୍ରକାଶ କରିବେ ଓ ସେହି ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାର ସ୍ଥାନୀୟମାନ ନିର୍ଣ୍ଣୟ କରିବେ ।

## ସୂଚନା

- 'ମାଙ୍କଡ଼ ହେଲା ଘୋଡ଼ା' ଗପରେ ସ୍ଥାନୀୟ ମାନ ବିଷୟରେ ଧାରଣା ଦିଆଯାଇଅଛି ।
- ନିର୍ଦ୍ଦିଷ୍ଟ ସଂଖ୍ୟାକୁ କେତୋଟି (୧୦) ଦଶ ଓ କେତୋଟି ଏକରେ ପ୍ରକାଶ କରାଯାଇ ପାରିବ; ତାହା ଦିଆଯାଇଛି ।

## ପ୍ରସ୍ତୁତି

### କୁହ ଭାଇ କେତେ ?

ଶିକ୍ଷକ ପିଲାମାନଙ୍କୁ ଗୋଲକରି ଠିଆ କରାନ୍ତୁ । ପିଲାମାନଙ୍କୁ ଶିକ୍ଷକ ସୂଚନା ଦେବେ- ମୁଁ ଯେତେବେଳେ କହିବି କୁହ ଭାଇ କେତେ ? ତୁମେମାନେ କହିବ 'ଭାଇ କହିବେ ଯେତେ' । ଶିକ୍ଷକ ଗୋଟିଏ ଫୁଲର ନାମ କହିବେ । ସେହି ନାମରେ ଥିବା ଅକ୍ଷର ଅନୁସାରେ ପିଲା ଦଳ ହୋଇ ଠିଆ ହେବେ । ଯେଉଁ ପିଲା ଦଳରେ ଠିଆ ହୋଇ ନଥିବ ସେ ଖେଳ ପରିଚାଳନା କରିବ । (ଖେଳ ବେଳେ ପିଲାମାନେ ଗୋଲାକାର ଭାବରେ ଠିଆ ହୋଇ ବୁଲୁଥିବେ)

- ସ୍ଥାନୀୟମାନ ଉପରେ ଆଧାରିତ ବିଭିନ୍ନ ଚିତ୍ର, ଖେଳ, ପ୍ରହେଳିକା ବିଷୟରେ ଅଧିକ ଧାରଣା ନେଇ ଶ୍ରେଣୀ ଗୃହକୁ ଆସନ୍ତୁ ।
- ଶିକ୍ଷକ ମଝିରେ ଗୋଲି, ଫୁଲ, କାଠିବିଡ଼ା ଓ ମଞ୍ଜି ପ୍ରଭୃତି ସଂଗ୍ରହ କରି ଆଣନ୍ତୁ ।

## ଆମେ ଜାଣିବା

- ଯେଉଁ ଗୋଲି ଏକ ଘରେ ଅଛି, ସେହି ଗୋଲି ଏକ ଏକକକୁ ବୁଝାଉଥିବାବେଳେ, ପୁଣି ସେହିଗୋଲି ଦଶ ଘରେ ରହିଲେ ଏକ ଦଶକକୁ ବୁଝାଏ ।
- ଗୋଟିଏ ଅଙ୍କ ଯେଉଁ ସ୍ଥାନରେ ( ଏକକ/ ଦଶକ ) ରହେ, ସେହି ସ୍ଥାନ ଅନୁସାରେ ତା'ର ମାନ ବଦଳିଯାଏ ।
- ସଂଖ୍ୟାରେ ବ୍ୟବହୃତ ପ୍ରତ୍ୟେକ ଅଙ୍କର ସ୍ଥାନୀୟମାନ ଓ ସାଧାରଣମାନ ଅଲଗା ଅଟେ । ଯଥା- ୩୫ରେ ୩ର ସ୍ଥାନୀୟମାନ - ୩୦, ସାଧାରଣ ମାନ-୩

## ଲୁଡୁ ଖେଳ

ପିଲାଙ୍କୁ ଗୋଲ୍ କରି ବସାଇ (୪ଜଣିଆଁ ଦଳରେ) ପ୍ରତି ଦଳପାଇଁ ଗୋଟିଏ "ସଂଖ୍ୟା ଡାଇସ୍ ଓ ୧୦ଟିକିଆ ଗୋଲି ପ୍ୟାକେଟ୍ ଦିଆଯିବ । (୫ ପ୍ୟାକେଟ୍) ୧୦ ଟିକିଆ ଗୋଲି ପ୍ୟାକେଟ୍ ସହିତ ୫୦ଟି ଲେଖାଏଁ ଗୋଟିକିଆ ଗୋଲି ଦିଆଯିବ ।

ଡାଇସଟିକୁ ଦଳର ପ୍ରତି ପିଲା ପକାଇବେ । ଯେଉଁ ପିଲା ଡାଇସ୍ ପକାଇବ, ସେ ଡାଇସ୍‌ରେ ଦେଖାଯାଉଥିବା ସଂଖ୍ୟା ପରିମାଣର ଗୋଲି ପାଇବ । ୧୦ଟି ଗୋଟିକିଆ ଗୋଲି ସଂଗ୍ରହ କରିବା ପରେ ତା' ବଦଳରେ ତା'କୁ ଗୋଟିଏ ୧୦ଟିଆ ପ୍ୟାକେଟ୍ ମିଳିବ । ଏହିପରି ଖେଳ ଚାଲିବ । ଖେଳ ଶେଷରେ ପ୍ରତ୍ୟେକ ଦଳର ହିସାବ ଦିଆଯାଇ କେଉଁ ଦଳ[illegible]ଏ ଜିତିଲା ଘୋଷଣା କରାଯିବ ।

**ଶିକ୍ଷକଙ୍କ କାର୍ଯ୍ୟ**

- ପିଲାଙ୍କୁ ଅର୍ଦ୍ଧ ବୃତ୍ତାକାରରେ ବସାଇ ଶିକ୍ଷକ 'ମାଙ୍କଡ଼ ହେଲା ଘୋଡ଼ା' ଗପଟିକୁ ଉପସ୍ଥାପନ କରନ୍ତୁ । ମଝିରେ ମଝିରେ କଥୋପକଥନ ସମ୍ପର୍କୀୟ ଛୋଟ ଛୋଟ ପ୍ରଶ୍ନ ପଚାରୁଥିବେ । କଥନ ଶେଷହେବା ପରେ ନିମ୍ନଲିଖିତ ପ୍ରଶ୍ନ ଗୁଡ଼ିକ ପଚାରନ୍ତୁ ।
- ମାଙ୍କଡ଼ କିପରି ଫୁଲଗୁଡ଼ିକ ଗଣିଲା ?
- ଗଧ ଫୁଲ ଗୁଡ଼ିକ କିଭଳି ଗଣିଲା ?

  ପାଠ୍ୟ ପୁସ୍ତକରେ ଦିଆଯାଇଥିବା କାର୍ଯ୍ୟାବଳୀର ପ୍ରଶ୍ନଗୁଡ଼ିକ ପିଲାମାନଙ୍କ ଦ୍ୱାରା ସମାଧାନ କରାଇ, ସେଗୁଡ଼ିକ ତନଖି କରିବେ । ଅଗ୍ରଗତି କମ୍ ହୋଇଥିବା ପିଲାମାନଙ୍କ ପାଇଁ ପ୍ରତିକାର ମୂଳକ ବ୍ୟବସ୍ଥା ଗ୍ରହଣ କରିବେ ।
- 'ଗଣିତର ମଜା'ରେ ଦଶକ ଓ ଏକକ ଘରର ଧାରଣା ପାଇବା ପାଇଁ ''ଆବାକସ୍''ର ସାହାଯ୍ୟ ଦିଆଯାଇଅଛି ।
- ସଂଖ୍ୟାକୁ ଆବାକସ୍‌ରେ ପ୍ରକାଶ କରାଯାଇଛି ।
- ରିଙ୍କୁ ଗଣିତର ୭୨ ନମ୍ବର ପାଇଛି । ଅପା ତା'କୁ 'ଆବାକସ୍' ମାଧ୍ୟମରେ ପ୍ରକାଶ କରିବା ପାଇଁ ଦଶକ ଘରେ ୭ଟି ଗୋଲି ଓ ଏକକ ଘରେ ୨ଟି ଗୋଲି ରଖିଛି ।
- ଏଣୁ ଏଠାରେ ଆବାକସ୍‌ରେ ପ୍ରକାଶ କରିବାପାଇଁ ଏକକ ଘର ଅଙ୍କ ୨କୁ ୨ଟି ଗୋଲିରେ ଓ ଦଶକ ଘରର ଅଙ୍କ ୭କୁ ୭ଟି ଗୋଲିରେ ଦେଖାଇ ଦିଆଯାଇଛି । ଆବାକସ୍ ସାହାଯ୍ୟରେ ସଂଖ୍ୟାର ସ୍ଥାନୀୟମାନ ଧାରଣା ଦୃଢ଼ୀକରଣ ପାଇଁ ନିମ୍ନ ଶିକ୍ଷଣ କାର୍ଯ୍ୟଟି କରାଯିବ ।
- ପିଲାମାନଙ୍କୁ ଦୁଇ ଦଳରେ ଭାଗ କରାଯିବ ।
- ଆବାକସ୍ ପଟା, ଆବାକସ୍‌ରେ ବ୍ୟବହାର ପାଇଁ ଆବଶ୍ୟକ ପରିମାଣ ଗୋଲି ଓ ସଂଖ୍ୟା କାର୍ଡ଼ ମଝିରେ ରଖାଯିବ ।
- ପ୍ରଥମେ ପିଲାମାନଙ୍କୁ କେତୋଟି ଦଳରେ ଭାଗ କରିବାକୁ ହେବ । (ପ୍ରତି ଦଳରେ ଅନ୍ତତଃ ୫ଜଣ ରହନ୍ତୁ) ପ୍ରତି ଦଳକୁ ବାହାରକୁ ପଠାଇ ୬୫ଟି ଲେଖାଏଁ ଯେ କୌଣସି ପତ୍ର ଆଣିବାକୁ କୁହାଯିବ । ତା'ପରେ ପ୍ରତିଦଳ ସେହି ୬୫ଟି ପତ୍ରକୁ ୧୫ଟି, ୧୭ଟି, ୧୬ଟି, ୨୧ଟି ଓ ୨୩ଟି ଲେଖାଏଁ ଗୋଟିଏ ଗୋଟିଏ ବିଡ଼ାରେ ବାନ୍ଧିବାକୁ କୁହାଯିବ ।

  ଏହାପରେ ପ୍ରତି ଦଳ ବାନ୍ଧିଥିବା ପ୍ରତ୍ୟେକ ବିଡ଼ାକୁ ଫିଟାଇ ୧୦ଟିକିଆ ବିଡ଼ା ୧୫ଟିକିଆ ପତ୍ର ବିଡ଼ାରୁ ଗୋଟିଏ ୧୦ଟିକିଆ ବିଡ଼ା ଓ ୫ଟି ଗୋଟିକିଆ ପତ୍ର ମିଳିବ । ଏହିପରି ପ୍ରତ୍ୟେକ ବିଡ଼ାକୁ ୧୦ଟିକିଆ ବିଡ଼ା ଓ ଗୋଟିକିଆରେ ପରିଣତ କରାଯିବ । ମୋଟରେ କେତୋଟି ୧୦ଟିକିଆ ବିଡ଼ା ଓ କେତୋଟି ଗୋଟିକିଆ ପତ୍ର ହେଲା ତା'କୁ ଅଲଗା କରି ରଖିବା ପରେ, ପୁଣି ଗୋଟିକିଆ ପତ୍ର ଗୁଡ଼ିକୁ ୧୦ଟିକିଆ ବିଡ଼ାରେ ଓ ଗୋଟିକିଆରେ ପରିଣତ କରି ମୋଟ ୧୦ଟିକିଆ ବିଡ଼ା ସଂଖ୍ୟା ଓ ଗୋଟିକିଆ ପତ୍ର ସଂଖ୍ୟା ଲେଖିବାକୁ ହେବ । (ଏହି କାର୍ଯ୍ୟ ପତ୍ର ବ୍ୟତୀତ ଭିନ୍ନ ଅନ୍ୟ କୌଣସି ବସ୍ତୁ ସାହାଯ୍ୟରେ କରାଯାଇ ପାରିବ ।)
- ୨୪,୨୫,୪୨,୪୯ ଆଦି ସଂଖ୍ୟା ଗୁଡ଼ିକର ଦଶକ ସ୍ଥାନରେ ଗୋଲ ବୁଲାଇ ଦଶକ ଘର ସଂଖ୍ୟା ଚିହ୍ନାଇବେ ।
- ପିଲାମାନେ ଭିନ୍ନ ଭିନ୍ନ ଦଳରେ ଗୋଲ୍ ହୋଇ ବସିବେ । ଦଳ ମଝିରେ ଗୋଟିଏ ବଡ଼ ଗୋଲେଇ ଓ ତା' ମଧ୍ୟରେ ଗୋଟିଏ ଛୋଟ ଗୋଲେଇ କରାଯିବ । ଦଶଟି ଛୋଟ ଗୋଡ଼ିକୁ ଦଳର ପ୍ରତ୍ୟେକ ପିଲା ଜଣ ଜଣ କରି ମଝି ଛୋଟ ଗୋଲେଇ ମଧ୍ୟରେ ପକାଇବେ । ପ୍ରତ୍ୟେକ ପିଲା ପକାଇବା ବେଳେ ମଝି ଛୋଟ ଗୋଲେଇରେ ରହୁଥିବା ଗୋଡ଼ିକୁ ଦଶକ ସ୍ଥାନୀୟ ଓ ବଡ଼ ଗୋଲେଇ ମଧ୍ୟରେ ରହୁଥିବା ଗୋଡ଼ିକୁ ଏକକ ସ୍ଥାନୀୟ ଅଙ୍କ ଭାବେ ନିଜ ଖାତାରେ ଲେଖି କେଉଁ ସଂଖ୍ୟା ହେଲା- କହିବେ । ଖେଳ ଶେଷରେ

◆ ଗୋଟିଏ ଦଳ ଅନ୍ୟ ଦଳକୁ ସଂଖ୍ୟା କାର୍ଡ଼ ଦେବ ।

◆ ସେ ଦଳ କାର୍ଡ଼ରେ ଥିବା ସଂଖ୍ୟା ଅନୁସାରେ ଆବାକସ୍‌ରେ ଗୋଲି ସଜାଇବେ ।

◆ ଯେଉଁ ଦଳ ଠିକ୍ ଭାବରେ ଅଧିକ ଥର ସଜାଇବେ, ସେହିଦଳ ବିଜୟୀ ହେବେ ।

**ଉପକରଣ**

◆ ଫୁଲ, ପତ୍ର, କାଠି, ଗୋଲି, ମଞ୍ଜି, ମାଳି ଇତ୍ୟାଦି ଏବଂ 'ଗଣିତର ମଜା' ଶିକ୍ଷଣ କାର୍ଯ୍ୟ ପାଇଁ ଆବାକସ୍ ପଟ୍ଟା ଓ ଗୋଲି ।

**କବାଡ଼ି ଖେଳ**

ପ୍ରତି ଦଳରେ ୮ ଜଣ ପିଲା ହୋଇ ଦୁଇଦଳ ପିଲା କବାଡ଼ି ଖେଳିବେ । ଜଣେ ପିଲା Scorer ହେବ ଅନ୍ୟ ପିଲାମାନେ ଖେଳ ଦେଖିବେ । ଉଭୟ ଦଳର ପିଲାଙ୍କୁ ୧,୨,୩,୪,୫,୬,୭,୮ ନମ୍ବର କାର୍ଡ଼ ଦିଆଯିବ । ଜଣେ ପିଲା ରାହା ଧରି ଯାଇ ପ୍ରତି ପକ୍ଷର ପିଲାଙ୍କୁ ଆଉଟ୍ କରିବା ବେଳେ ସେ ବା ତା' ଦଳ ପାଇବା ପଏଣ୍ଟ ହିସାବ ଅଲଗା ପ୍ରକାର ହେବ । ଯଥା- ନିଜ ନମ୍ବରଟିଏ ଏକକ ଘର ଅଙ୍କ ଓ ଆଉଟ୍ କରିଥିବା ପିଲାର ନମ୍ବରଟି ଦଶକ ଘର ଅଙ୍କ ସମ୍ବଳିତ ସଂଖ୍ୟା । ଯଦି ରାହା ଧରି ପାହିକୁ ଫେରି ନ ପାରି ଆଉଟ୍ ହେଲେ, ଆଉଟ୍ କରିଥିବା ପିଲା ଓ ଦଳ ପଏଣ୍ଟ ପାଇବେ । ରାହା ଧରି ଯାଇଥିବା ପିଲାର ନମ୍ବରଟି ଦଶକ ଅଙ୍କ ଓ ତା'କୁ ପ୍ରଥମେ ଛୁଇଁଥିବା ଓ ଧରିଥିବା ପିଲାର ନମ୍ବର ଏକକ ଘର ଅଙ୍କ ସମ୍ବଳିତ ସଂଖ୍ୟାକୁ Scorer ରୂପେ ଧରି ନିଆଯିବ । ଖେଳ ଶେଷରେ ଶିକ୍ଷକ ଉଭୟ ଦଳର Scorer ର ସମଷ୍ଟି ନିରୂପଣ କରି ବିଜୟୀ ଦଳ ଘୋଷଣା କରିବେ ।

ଯାହାର ସଂଖ୍ୟା ମଧ୍ୟରେ ସବୁଠାରୁ ବଡ଼ ସଂଖ୍ୟା ଅଛି ସେ ପ୍ରଥମ ହେବ । (ଗୋଲେଇ ବାହାରକୁ ଗୋଡ଼ି ବାହାରି ଗଲେ କିମ୍ବା ରେଖା ଉପରେ ରହିଲେ ତାକୁ ହିସାବକୁ ନିଆଯିବ ନାହିଁ ।)

**ପ୍ରହେଳିକା**

◆ ଦୁଇଟି ଅଙ୍କରେ ଗଢ଼ା ଶରୀର
ଦେଖିବାକୁ ଆମେ ଭାରି ସୁନ୍ଦର
ଯାଆଁଳା ଭାଇ
ସାନ ବଡ଼ ବାରି ହୁଅଇ ନାହିଁ ।

◆ ଦଶକ ସ୍ଥାନରେ ମୋ ବଡ଼ ଭାଇ
ଏକକ ସ୍ଥାନରେ ମୁଁ ସାନ ଭାଇ
ଦୁହେଁ ମିଶି ଏକ ସଂଖ୍ୟା ହୁଅଇ
ବାରରୁ ବଡ଼ ହୁଅଇ ନାହିଁ
କହରେ ପିଲେ କିଏ ମୁହିଁ ।

**ଆବଶ୍ୟକ ଉପକରଣ**

ସଂଖ୍ୟା ଡାଇସ୍, ଆବଶ୍ୟକ ସଂଖ୍ୟକ ଗୋଲି, ଗୋଡ଼ି, ପତ୍ର ଇତ୍ୟାଦି ।

**ପ୍ରଥମ ଏକକ ପରୀକ୍ଷଣ**

# ଦୌଡ଼ ପ୍ରତିଯୋଗିତା

**ସମୟ - ୧୪ ପିରିୟଡ୍**

ଦିନେ ବଣ ମୂଲକର ବଡ଼ ବଡ଼ିଆ- ହାତୀ, ବାଘ, ସିଂହ, ଗଣ୍ଡା ଓ ଗୟଳ ଏକାଠି ହୋଇଥିଲେ । କଥା ହେଲା- ସେମାନଙ୍କ ଭିତରୁ ଜଣେ ଖେଳ ବିଭାଗ କଥା ବୁଝିବ ଓ ଆଜିକାଲି ସବୁଆଡ଼େ ଚାଲିଥିବା ଖେଳ ପ୍ରତିଯୋଗିତା ପାଇଁ ଭଲ ଖେଳାଳି ବାଛି ପଠାଇବ ।

ସିଂହର କଥା ଅନୁସାରେ ସ୍ଥିର ହେଲା ଯେ, ଆଜି ସନ୍ଧ୍ୟାବେଳେ ଦୌଡ଼ ପ୍ରତିଯୋଗିତା ହେବ । ସେଥିରେ ପ୍ରଥମ ଓ ଦ୍ୱିତୀୟ ସ୍ଥାନରେ ଯେଉଁମାନେ ରହିବେ- ସେମାନଙ୍କୁ ଖେଳ ବିଭାଗ ଦିଆଯିବ ।

ଦୌଡ଼ ପ୍ରତିଯୋଗିତାରେ ଯୋଗ ଦେବା ପାଇଁ ଯେଉଁମାନେ ଚାହିଁବେ- ସନ୍ଧ୍ୟା ଛଅଟା ବେଳେ ଖେଳପଡ଼ିଆରେ ଏକାଠି ହେବାକୁ ଜଣାଇ ଦିଆଗଲା ।

ଠିକ୍ ଛଅଟା ବେଳେ ପ୍ରତିଯୋଗିତା ଆରମ୍ଭ ହେଲା ।



ପ୍ରଥମ

ଦ୍ୱିତୀୟ

ତୃତୀୟ

ଚତୁର୍ଥ

ପଞ୍ଚମ

ଷଷ୍ଠ

ସପ୍ତମ

ଅଷ୍ଟମ

ନବମ

ଦଶମ

୧. କିଏ ପ୍ରଥମ ହେଲା ? ....................

୨. ତୃତୀୟ ସ୍ଥାନ କିଏ ପାଇଲା ?....................

୩. ବାଘ ନଥିଲେ କିଏ ପ୍ରଥମ ହୋଇଥାନ୍ତା ?...........................

୪. ବିଲୁଆ କେଉଁ ସ୍ଥାନରେ ଅଛି ? ......................

୫. ଦୌଡ଼ରେ କେତେ ଜଣ ଭାଗ ନେଇଥିଲେ ?........

୬. ସମସ୍ତଙ୍କ ପଛରେ କିଏ ରହିଲା ?....... ତା' ସ୍ଥାନ କେତେ ?.......

# ଅଭ୍ୟାସ

୧. ଖାଲିଘର ପୂରଣ କର ।



ପ୍ରଥମ

ବବୁଲ୍‌ର କାର୍



ଡବୁଲ୍‌ର କାର୍



ଲୁଡୁର କାର୍



ଗୁଡୁର କାର୍



ଡୁଡୁର କାର୍



ପିଙ୍କୁର କାର୍



ରିଙ୍କୁର କାର୍

୨.




- ମୁନି କେଉଁ ପାହାଚରେ ଠିଆ ହୋଇଛି ?
- ମନା କେତୋଟି ପାହାଚ ଚଢ଼ିଲେ ଷଷ୍ଠ ପାହାଚରେ ପହଞ୍ଚିବ ?
- କୁନା କେତୋଟି ପାହାଚ ଓହ୍ଲାଇଲେ ପଞ୍ଚମ ପାହାଚରେ ପହଞ୍ଚିବ ?
- ମିନା ୬ଟି ପାହାଚ ଓହ୍ଲାଇଲେ କେଉଁ ପାହାଚରେ ପହଞ୍ଚିବ ?

ସୂଚନା- ପ୍ରଥମକୁ ୧ମ ଭାବରେ ଲେଖାଯାଏ ଓ ପ୍ରଥମ କୁହାଯାଏ । ସେହିପରି ଦ୍ୱିତୀୟକୁ ୨ୟ, ତୃତୀୟକୁ ୩ୟ, ଚତୁର୍ଥକୁ ୪ର୍ଥ, ପଞ୍ଚମକୁ ୫ମ, ଷଷ୍ଠକୁ ୬ଷ୍ଠ, ସପ୍ତମକୁ ୭ମ, ଅଷ୍ଟମକୁ ୮ମ, ନବମକୁ ୯ମ ଓ ଦଶମକୁ ୧୦ମ ଭାବରେ ଲେଖାଯାଏ ।

୩. ଯେଉଁ ସ୍ଥାନରେ ଅଛି ଠିକ୍ (√) ଚିହ୍ନ ଦିଅ ।




| କପ୍ | | ଧନୁ | | ପେନ୍‌ସିଲ | |
|---|---|---|---|---|---|
| ଦ୍ୱିତୀୟ | ☐ | ସପ୍ତମ | ☐ | ପ୍ରଥମ | ☐ |
| ତୃତୀୟ | ☐ | ଅଷ୍ଟମ | ☐ | ଦ୍ୱିତୀୟ | ☐ |
| ଅଷ୍ଟମ | ☐ | ନବମ | ☐ | ତୃତୀୟ | ☐ |
| **ଗିଲାସ** | | **ଫୁଲ** | | **ବାଲ୍‌ଟି** | |
| ପ୍ରଥମ | ☐ | ଚତୁର୍ଥ | ☐ | ଦ୍ୱିତୀୟ | ☐ |
| ଅଷ୍ଟମ | ☐ | ପଞ୍ଚମ | ☐ | ନବମ | ☐ |
| ସପ୍ତମ | ☐ | ଅଷ୍ଟମ | ☐ | ଦଶମ | ☐ |
| **ବେଲଣାକାଠି** | | **ବତକ** | | **ମାଠିଆ** | |
| ଅଷ୍ଟମ | ☐ | ଷଷ୍ଠ | ☐ | ଚତୁର୍ଥ | ☐ |
| ସପ୍ତମ | ☐ | ପଞ୍ଚମ | ☐ | ତୃତୀୟ | ☐ |
| ନବମ | ☐ | ଚତୁର୍ଥ | ☐ | ଦଶମ | ☐ |

୪. 

## କହି ପାରିବ କିଏ ?

ପାଞ୍ଚୋଟି ଅକ୍ଷରେ ନାମ ମୋହର
ଜିଲ୍ଲା କଥା ଭାବି ବିଚାର କର ।
ଚତୁର୍ଥ ପଞ୍ଚମ ମିଶିବେ ଯେବେ
ପିଠାର ଭିତରୁ ପାଇବ ତେବେ ।
ତୃତୀୟ ଦ୍ୱିତୀୟ ହୋଇଲେ ଛିଡ଼ା
ମାପ ଫିତାଟିଏ ହୋଇବ ଲୋଡ଼ା
ପ୍ରଥମ ପଞ୍ଚମ ଏକାଠି କର
ଗୋରସ ଉପରେ ମୋହରି ଘର
ପଞ୍ଚମ ପ୍ରଥମ ହୋଇଲେ ମେଳ
ଗୋଲ ଯୋଗ କଲେ ବୋହିବ ଲାଳ ।
ନାଁଆଟା ମୋହର କହିବ ଯିଏ
ହୀରାକୁଦ ବୁଲି ଆସିବ ସିଏ ।

| | |
|---|---|
| ଚତୁର୍ଥ ଓ ପଞ୍ଚମ | ☐ |
| ତୃତୀୟ ଓ ଦ୍ୱିତୀୟ | ☐ |
| ପ୍ରଥମ ଓ ପଞ୍ଚମ | ☐ |
| ପଞ୍ଚମ ଓ ପ୍ରଥମ | ☐ |

ଉତ୍ତର ☐

## କ'ଣ ଶିଖିବେ

- ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଆଦି ପ୍ରଥମରୁ ଦଶମ ପର୍ଯ୍ୟନ୍ତ ପୂରଣ ବାଚକ ସଂଖ୍ୟା ଗୁଡ଼ିକୁ ବୁଝିବେ ।

## ସୂଚନା

- ଦୌଡ଼ ପ୍ରତିଯୋଗିତା ଗଳ୍ପରେ ପୂରଣ ବାଚକ ସଂଖ୍ୟାର ଧାରଣା ଦିଆଯାଇଅଛି ।

## ପ୍ରସ୍ତୁତି

- ପିଲାମାନେ ଧାଡ଼ିରେ ଠିଆ ହୁଅନ୍ତୁ । ଶିକ୍ଷକ ଥରେ ତାଳି ମାରିଲେ ପିଲାମାନେ ଥରେ ଆଗକୁ ଡେଇଁବେ । ଏହିପରି ୩ଥର ତାଳି ମରାହେବ । ୩ଥର ପିଲା ଆଗକୁ ଡେଇଁ ଡେଇଁ ଯିବେ । ଆଗରେ ଥିବା ପିଲା ପ୍ରଥମ, ତା'ପରେ ୨ୟ ଏହି କ୍ରମ ପିଲାମାନେ ଖେଳରୁ ଜାଣିବେ । ସମସ୍ତଙ୍କର କ୍ରମ ସମସ୍ତେ ଜାଣିବେ ।
- ପୂରଣ ବାଚକ ସଂଖ୍ୟାର ଧାରଣା ଦେବା ପାଇଁ ଶିକ୍ଷକ ବିଭିନ୍ନ ଉଦାହରଣ ଭାବିବା ସହିତ ଚିତ୍ର, ଗୀତ ଓ ବିଭିନ୍ନ ଖେଳ ପ୍ରସ୍ତୁତ କରିଥିବେ ।
- ବିଭିନ୍ନ ଚିତ୍ର ସାଙ୍ଗରେ ନେଇ ଆସିଥିବେ (ଦୌଡ଼ ପ୍ରତିଯୋଗିତାର)

## ଶିକ୍ଷକଙ୍କ କାର୍ଯ୍ୟ

- ଦୌଡ଼ ପ୍ରତିଯୋଗିତାର ଗଳ୍ପକୁ ଉପସ୍ଥାପନ କରନ୍ତୁ ।
- ଗଳ୍ପ ଉପସ୍ଥାପନା ସମୟରେ ଛୋଟ ଛୋଟ ପ୍ରଶ୍ନ ପଚାରନ୍ତୁ । ଆବଶ୍ୟକ ସ୍ଥଳେ ଚିତ୍ର ବ୍ୟବହାର କରନ୍ତୁ ।
- ଗଳ୍ପ ଛଳରେ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଆଦି ପୂରଣ ବାଚକ ସଂଖ୍ୟାର ପ୍ରୟୋଗ କରି ଗଳ୍ପ ଶେଷ କରିବେ ।

## ଆମେ ଜାଣିବା

- ପ୍ରଥମ, ଦ୍ୱିତୀୟ, ତୃତୀୟ ସ୍ଥାନ ନିରୂପଣ ପାଇଁ କୌଣସି ଏକ ନିର୍ଦ୍ଦିଷ୍ଟ ଦିଗରୁ ଗଣନ ଆରମ୍ଭ କରାଯିବା ଉଚିତ୍ ।
- ୧,୨,୩,୪,୫,୬ରେ ୧ ପ୍ରଥମ ସ୍ଥାନରେ ଅଛି, କିନ୍ତୁ ୩,୫,୪,୬,୨,୧ ଏହି ସଂଖ୍ୟା ସେଟ୍‌ରେ ୩ ହେଉଛି ପ୍ରଥମ ସଂଖ୍ୟା ଓ ୧ ହେଉଛି ଷଷ୍ଠ ସଂଖ୍ୟା, ତେଣୁ ସ୍ଥାନର ଅବସ୍ଥିତିକୁ ନେଇ କେଉଁଟି ପ୍ରଥମ କେଉଁଟି ଦ୍ୱିତୀୟ ତାହା ସ୍ଥିର କରାଯାଏ । ଯେପରି କପିଳାସରେ 'ଳା'ର ସ୍ଥାନ ବାମ ପଟରୁ ତୃତୀୟ ।
- ପୂରଣ ବାଚକ ସଂଖ୍ୟା ସ୍ଥାନକୁ ବୁଝାଏ, ମାନ (ମୂଲ୍ୟ) କୁ ବୁଝାଏ ନାହିଁ ।
- ପୂରଣ ବାଚକ ସଂଖ୍ୟାକୁ ସଂକ୍ଷିପ୍ତ ଆକାରରେ ୧ମ, ୨ୟ, ୩ୟ, ୪ର୍ଥ ପ୍ରଭୃତି ଲେଖାଯାଇଥାଏ ଓ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ କୁହାଯାଏ । ଏକମ, ଦୁଇୟ ପ୍ରଭୃତି କହିବା ଠିକ୍ ନୁହେଁ ।

## ଦଳଗତ କାର୍ଯ୍ୟ

## ବେଙ୍ଗଡ଼ିଆଁ ଖେଳ

ପିଲାମାନଙ୍କୁ ଦୁଇଟି ଦଳରେ ବିଭକ୍ତ କରାଯିବ ।
ପ୍ରତି ଦଳରେ ଅତି ବେଶୀରେ ୧୦ ଜଣ ପିଲା ରହିବେ । ଅନ୍ୟମାନେ ଦେଖିବେ ।
ପ୍ରାୟ ୧୫ ମିଟର ବ୍ୟବଧାନରେ ଦୁଇପଟେ, ଦୁଇ ଦଳର ପିଲାମାନେ ସାମନାସାମନି ହୋଇ ଠିଆହେବେ ।
ଗୋଟିଏ ଦଳର ପିଲା ବେଙ୍ଗ ହେବେ ।
ଅନ୍ୟ ଦଳର ପିଲାଙ୍କୁ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଏହିପରି କାର୍ଡ଼ରେ

- ଗଳ୍ପ ଶେଷରେ ନିମ୍ନ ଲିଖିତ ପ୍ରଶ୍ନ କରିବେ ।

୧. ଦୌଡ଼ରେ କିଏ ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ ହେଲା ?

୨. ଦ୍ୱିତୀୟ ଥର ଦୌଡ଼ରେ କିଏ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ହେଲା ।

- ପିଲାମାନେ ପ୍ରଦତ୍ତ କାର୍ଯ୍ୟାବଳୀରେ ଥିବା ବିଭିନ୍ନ ସମସ୍ୟାକୁ ବ୍ୟକ୍ତିଗତ ଓ ଦଳଗତ ଭାବେ ଆଲୋଚନା କରି ଉତ୍ତର ଖାଲିସ୍ଥାନରେ ଲେଖିବେ ।
- ଆବଶ୍ୟକ ସ୍ଥଳେ ଶିକ୍ଷକଙ୍କ ସାହାଯ୍ୟ ନେବେ ।

**ଉପକରଣ**

- ଦୌଡ଼ ପ୍ରତିଯୋଗିତାର ଚିତ୍ର

**ରୁମାଲ୍ ଖେଳ**

ସର୍ବାଧିକ ୨୦ ଜଣ ପିଲାଙ୍କୁ ନେଇ ଏହି ଖେଳ ହେବ । ପିଲାମାନେ ଦୁଇଦଳ ହେବେ । ଦୁଇ ଧାଡ଼ିରେ ପଛକୁ ପଛ ଠିଆ ହେବେ । ସାମନାରେ ଶିକ୍ଷକ ଠିଆ ରହିବେ ଓ ରୁମାଲ୍‌ଟିଏ ରଖିବେ । ପ୍ରତି ଧାଡ଼ିରେ ପିଲାମାନେ ଧାଡ଼ିରେ ନିଜ ନିଜ ସ୍ଥିତିକୁ ଜାଣିବେ ଓ ମନେ ରଖିବେ- ଯଥା- ପ୍ରଥମ ପିଲା, ଦ୍ୱିତୀୟ ପିଲା, ତୃତୀୟ ପିଲା ପ୍ରଭୃତି । ଶିକ୍ଷକ କୌଣସି ସ୍ଥାନକୁ ସୂଚାଉଥିବା ସଂଖ୍ୟା ଯଥା- ୪ର୍ଥ/ ୬ଷ୍ଠ/ ୨ୟ ପ୍ରଭୃତି କହିବା ମାତ୍ରେ ଉଭୟ ଦଳରୁ ସେହି ନିର୍ଦ୍ଦିଷ୍ଟ ପିଲାଯାଇ ରୁମାଲ୍‌କୁ ଛୁଇଁବେ । ଯେଉଁ ଦଳର ଠିକ୍ ସଂଖ୍ୟକ ପିଲାଟି ରୁମାଲ୍‌କୁ ପ୍ରଥମେ ଛୁଇଁବେ, ସେହି ପିଲା ରୁମାଲ୍ ନେବେ ଓ ସେହି ଦଳ ଏକ ପଏଣ୍ଟ ପାଇବ । ପୁଣି ରୁମାଲ୍ ରଖିବେ ଓ ଖେଳ ଚାଲିବ ।

ଲେଖାଥିବା ନମ୍ବର ଦିଆଯିବ ।

ଏହି ନମ୍ବର ଗୁଡ଼ିକ ନେଇ ସେମାନେ ଠିଆ ହେବେ ।

ଗୋଟିଏ ପଟୁ ବେଙ୍ଗ ହୋଇଥିବା ପିଲା ବେଙ୍ଗ ଭଳି ଡେଇଁ ଡେଇଁ ଅନ୍ୟ ପଟକୁ ଯିବ । ପ୍ରଥମେ ପହଞ୍ଚିବା ବେଙ୍ଗ ପିଲାକୁ ଅନ୍ୟ ଦଳର ପ୍ରଥମ କାର୍ଡ଼ ପାଇଥିବା ପିଲା, ପରବର୍ତ୍ତୀ ପିଲାକୁ ଦ୍ୱିତୀୟ କାର୍ଡ଼ ପାଇଥିବା ପିଲା ଧରିବେ । ଏହିପରି ଦୌଡ଼ିଡିଆଁ, ମ୍ୟୁଜିକ୍ ଚେୟାର ଖେଳ କରାଯାଇ ପୂରଣ ବାଚକ ସଂଖ୍ୟାର ଧାରଣା ଦିଆଯାଇ ପାରିବ ।

- ପିଲାଙ୍କୁ ଧାଡ଼ି ଧାଡ଼ି କରି ବସାଇ ଗୋଟିଏ ଧାଡ଼ିରେ ପିଲାଙ୍କୁ ଠିଆ କରାଇ ପ୍ରଥମ, ଦ୍ୱିତୀୟ, ତୃତୀୟ ଭଳି ପୂରଣ ବାଚକ ସଂଖ୍ୟା ଜାଣିବା ପାଇଁ ବିଭିନ୍ନ ଶିକ୍ଷଣ କାର୍ଯ୍ୟ କରାଯାଇପାରେ ।

**ଉପକରଣ**

- ପ୍ରଥମରୁ ଦଶମ ପର୍ଯ୍ୟନ୍ତ ଲେଖାଥିବା କାର୍ଡ଼

ବିଭିନ୍ନ ଖେଳ ପାଇଁ ଆବଶ୍ୟକ ଉପକରଣ

**ଗପ**

- ପିଲାଙ୍କୁ ପଞ୍ଚୁ ପାଣ୍ଡବ ଗପ କହିବେ । ତା'ପରେ ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ପଞ୍ଚମ ଭାଇ କିଏ କିଏ ଗୋଟି ଗୋଟି ପଚାରିବେ ।

**ବ୍ୟକ୍ତିଗତ କାର୍ଯ୍ୟ**

ପଞ୍ଚୁପାଣ୍ଡବଙ୍କୁ ଯୋଡ଼ି ଯୋଡ଼ି ଚିହ୍ନାଅ ।

| | |
|---|---|
| ୧ମ ଭାଇ | ଭୀମ |
| ୨ୟ ଭାଇ | ଅର୍ଜୁନ |
| ୩ୟ ଭାଇ | ସହଦେବ |
| ୪ର୍ଥ ଭାଇ | ଯୁଧିଷ୍ଠିର |
| ୫ମ ଭାଇ | ନକୁଳ |

## ଆଖି ଡାକ୍ତର ବାଦୁଡ଼ି

ସମୟ - ୩୦ ପିରିୟଡ୍

ଗାଁ ମୁଣ୍ଡ ବୁଢ଼ା ବରଗଛରେ ୧୨ଟି ପେଚା ଓ ୧୩ଟି ପାରା ରହୁଥିଲେ । ସେମାନଙ୍କ ମଧ୍ୟରେ ବେଳେ ବେଳେ କଳି ହୁଏ । ପାରା ଦଳ ପେଚା ଦଳଙ୍କୁ ଦେଖେଇ ଦେଖେଇ କହନ୍ତି- ''ଆମେ ଦିନରେ ଚରାବୁଲା କଲାବେଳେ, ତୁମେ ଗଛ କୋରଡ଼ରେ ଚୋରଙ୍କ ଭଳି ଲୁଚି ବସୁଛ । ଦିନ ଆଲୁଅରେ ବି ତୁମେ କିଛି ଦେଖି ପାରୁନ ।'' ଏକଥା ପେଚାମାନଙ୍କୁ ବହୁତ ବାଧେ । ସେମାନେ ମଧ୍ୟ ଛାଡ଼ିଲେନି । ପେଚାଦଳ ରାଗ ତମ ତମ ହୋଇ କହିଲେ- ''ତୁମ ମାନଙ୍କର ବି ଆଖି ଦୋଷ ରହିଛି । ଆମେ ଅନ୍ଧାର ରାତିରେ ଖେଳା ବୁଲା କଲାବେଳେ ତୁମେ ଗଛ ଡାଳରେ ବସି ଘୁମୁଛ ।''

ଦୁଇ ଦଳର କଳି ବଢ଼ିବାରୁ ବାଦୁଡ଼ି ସେଥିରେ ମୁଣ୍ଡ ପୂରାଇଲା । ଉଭୟ ଦଳକୁ ଡାକି ଡାକ୍ତର ବାଦୁଡ଼ି କହିଲା-''କଳି ଗୋଳ କରନାହିଁ - ଜଣଙ୍କ ପରେ ଜଣେ ଆସ । ତୁମ ସମସ୍ତଙ୍କ ଆଖି ପରଖି ନେବା ।''



ସମସ୍ତଙ୍କ ଆଖି ପରଖିବା ପରେ ବାଦୁଡ଼ି କହିଲା- ''ତୁମ ସମସ୍ତଙ୍କର ଆଖି ଦୋଷ ରହିଛି । ଏଥିପାଇଁ ଔଷଧ କାମ କରିବ ନାହିଁ । ତୁମମାନଙ୍କୁ ଚଷମା ନେବାକୁ ହେବ ।'' ତା'ପରେ ସେମାନଙ୍କ ସଂଖ୍ୟା ହିସାବ କଲା ।

| | |
|---|---|
| ''୧୨ ପେଚା ପାଇଁ | ୧୨ଟି ଚଷମା |
| ୧୩ ପାରା ପାଇଁ | + ୧୩ଟି ଚଷମା |
| ମୋଟ | ୨୫ଟି ଚଷମା ଦରକାର ହେବ ।'' |

''କିଛି ଟଙ୍କା ଦିଅ । ଦୁଇଦିନ ପରେ ଆସିବ । ପୂରା ଟଙ୍କା ଦେଇ ଚଷମାନେଇ ପିନ୍ଧିବ । ନଚେତ୍ ଅପରେସନ ଦରକାର ହେବ ।''

ଆସ ଜାଣିବା ୧୨ ଓ ୧୩ ସଂଖ୍ୟା ଦୁଇଟିକୁ କିପରି ମିଶା ଯାଇଛି ।

୧୨ କୁ ୧ ଦଶ ୨ଏକ ଲେଖାଯାଇ ପାରିବ ।
୧୩ କୁ ୧ ଦଶ ୩ ଏକ ଲେଖାଯାଇ ପାରିବ ।
ମିଶାଣ ପ୍ରଥମେ ଏକ ସ୍ଥାନରୁ ଆରମ୍ଭ କରାଯିବ ।
ଏଠାରେ ୨ଏକ + ୩ ଏକ=୫ ଏକ
ମିଶାଣ ଫଳରେ ଏକ ସ୍ଥାନର ତଳେ ୫ଏକ ରହିଛି ।

| | ଦଶ | ଏକ |
|---|---|---|
| | ୧ | ୨ |
| + | ୧ | ୩ |
| | | ୫ |

୧ଦଶ+୧ଦଶ = ୨ଦଶ
ଦଶକ ଘରେ ୨ ଦଶ ହେଲା
ଦୁଇ ଦଶକକୁ ୨୦ ଭାବରେ ପ୍ରକାଶ କରାଗଲା ।
ତେଣୁ ୨ ଦଶ ୫ ଏକ= ୨୦+୫= ୨୫ ହେଲା

| ଦଶ | ଏକ |
|---|---|
| ୧ | ୨ |
| ୧ | ୩ |
| ୨ | ୫ |

### ଅଭ୍ୟାସ

୧. ରେଳଗାଡ଼ିର ଗୋଟିଏ ଡ଼ବାରେ ୨୪ ଜଣ ପୁରୁଷ ଓ ୨୩ ଜଣ ସ୍ତ୍ରୀ ଯାଉଥିଲେ । ତେବେ ସେହି ରେଳ ଡବାରେ ବସି ଯାଉଥିବା ଲୋକ ସଂଖ୍ୟା କେତେ ?

ରେଳ ଡବାଟିରେ ପୁରୁଷ ବସିଥିଲେ [୨୪]
ସେହି ଡବାରେ ସ୍ତ୍ରୀଲୋକ ବସିଥିଲେ [୨୩]

ମୋଟରେ ପୁରୁଷ ଓ ସ୍ତ୍ରୀ ବସିଥିଲେ ୨୪ ଓ ୨୩ = [ ]

୨. ଗୋଟିଏ ଫୁଲ ମାଳରେ ୪୩ଟି ଫୁଲ ଓ ଆଉ ଗୋଟିଏ ଫୁଲ ମାଳରେ ୩୪ଟି ଫୁଲ ଅଛି । ସେହି ଦୁଇଟି ଫୁଲ ମାଳରେ ମୋଟରେ କେତୋଟି ଫୁଲ ଅଛି ?

ଗୋଟିଏ ଫୁଲ ମାଳରେ ଫୁଲ ଅଛି [୪୩]
ଆଉ ଗୋଟିଏ ଫୁଲମାଳରେ ଫୁଲ ଅଛି [୩୪]

ଦୁଇଟିଯାକ ଫୁଲମାଳରେ ଫୁଲ ଅଛି— ଓ — = [ ]

୩. ଗୋଟିଏ ଘର ତିଆରି ପାଇଁ ପ୍ରଥମ ଦିନ ୧୫ ଜଣ
ଦ୍ୱିତୀୟ ଦିନ ୨୩ ଜଣ ଓ ତୃତୀୟ ଦିନ ୩୦ ଜଣ
ଲୋକ କାମ କରିଥିଲେ । ତେବେ ସେହି ତିନି ଦିନରେ
ମୋଟ କେତେ ଲୋକ କାମ କରିଥିଲେ ?

ପ୍ରଥମ ଦିନ କାମ କରିଥିଲେ- ☐
ଦ୍ୱିତୀୟ ଦିନ କାମ କରିଥିବା ଲୋକ ସଂଖ୍ୟା ☐
ତୃତୀୟ ଦିନ କାମ କରିଥିବା ଲୋକ ସଂଖ୍ୟା ☐

---

ତିନିଦିନରେ କାମ କରିଥିବା ଲୋକ ସଂଖ୍ୟା — + — + — = ☐

୪. ଜଣେ ମାଛ ଧରାଳି ପ୍ରଥମ ଦିନ ୧୪ଟି,
ଦ୍ୱିତୀୟ ଦିନ ୨୧ଟି ଓ ତୃତୀୟ ଦିନ ୨୩ଟି
ମାଛ ଧରିଲେ । ତିନି ଦିନରେ ମୋଟରେ
ସେ କେତୋଟି ମାଛ ଧରିଲେ ?

ପ୍ରଥମ ଦିନ ଧରିଥିଲେ ୧୪
ଦ୍ୱିତୀୟ ଦିନ ଧରିଥିଲେ ୨୧
ତୃତୀୟ ଦିନ ଧରିଥିଲେ ୨୩

---

ମାଛ ଧରାଳି ସେହି ତିନି ଦିନରେ ମାଛ ଧରିଥିଲେ__+__+__ = ☐

## ବିଜୟ ଚକ୍ର

୫.

| | | | | | | | | | |
|---|---|---|---|---|---|---|---|---|---|
| ୧୦୦ | ୯୯ | ୯୮ | ୯୭ | ୯୬ | ୯୫ | ୯୪ | ୯୩ | ୯୨ | ୯୧ |
| ୮୧ | ୮୨ | ୮୩ | ୮୪ | ୮୫ | ୮୬ | ୮୭ | ୮୮ | ୮୯ | ୯୦ |
| ୮୦ | ୭୯ | ୭୮ | ୭୭ | ୭୬ | ୭୫ | ୭୪ | ୭୩ | ୭୨ | ୭୧ |
| ୬୧ | ୬୨ | ୬୩ | ୬୪ | ୬୫ | ୬୬ | ୬୭ | ୬୮ | ୬୯ | ୭୦ |
| ୬୦ | ୫୯ | ୫୮ | ୫୭ | ୫୬ | ୫୫ | ୫୪ | ୫୩ | ୫୨ | ୫୧ |
| ୪୧ | ୪୨ | ୪୩ | ୪୪ | ୪୫ | ୪୬ | ୪୭ | ୪୮ | ୪୯ | ୫୦ |
| ୪୦ | ୩୯ | ୩୮ | ୩୭ | ୩୬ | ୩୫ | ୩୪ | ୩୩ | ୩୨ | ୩୧ |
| ୨୧ | ୨୨ | ୨୩ | ୨୪ | ୨୫ | ୨୬ | ୨୭ | ୨୮ | ୨୯ | ୩୦ |
| ୨୦ | ୧୯ | ୧୮ | ୧୭ | ୧୬ | ୧୫ | ୧୪ | ୧୩ | ୧୨ | ୧୧ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |





ବିଜୟ ଚକ୍ରରେ ହାତ ବୁଲାଇ ଆଗକୁ ଚାଲ ।

ଆଖି ବନ୍ଦକରି ବିଜୟ ଚକ୍ରରେ ୩ ଘେରା ଆଙ୍ଗୁଠି ବୁଲାଇ ରଖିବ । ଆଙ୍ଗୁଠି ଯେଉଁ ଘରେ ରହିବ ସେହି ଘରର ସଂଖ୍ୟା ଅନୁସାରେ ଟିକିଲି ଆଗକୁ ଯିବ । ତା'ପର ପାଳିରେ ଯେଉଁ ସଂଖ୍ୟା ଆସିବ ପୂର୍ବ ସଂଖ୍ୟାରେ ସେହି ସଂଖ୍ୟା ମିଶାଇ ଟିକିଲି ଆଗକୁ ଚାଲିବ ।

୬. ସାଙ୍ଗ ଦୁଇଟିକୁ ଏକାଠି କର ।

| | |
|---|---|
| ୩୦ + ୧୭ | ୩୦ + ୨୪ |
| ୫୩ + ୨୦ | ୫୦ + ୧୬ |
| ୩୪ + ୨୦ | ୨୦ + ୨୭ |
| ୫୦ + ୨୫ | ୪୨ + ୩୩ |
| ୩୩ + ୩୩ | ୪୦ + ୩୩ |

୭. ଉଦାହରଣ ପରି ଖାଲି ସ୍ଥାନ ପୂରଣ କର ।

| ୧୦୦ | | | | | | | | | | |
|---|---|---|---|---|---|---|---|---|---|---|
| ୧୦ | | | | | | | | | | |
| ୧୦ | | ୮୦ | | | | | | | | |
| ୧୦ | | | | | | | | | | |
| ୧୦ | | | | ୬୦ | | | | | | |
| ୧୦ | | | | | | | | | | |
| ୧୦ | | | | | ୧୦ | | | | | |
| ୧୦ | | | | | ୧୦ | | ୩୦ | | | |
| ୧୦ | | | | | ୧୦ | | ୧୦ | ୨୦ | | |
| ୧୦ | | | | | ୧୦ | | ୧୦ | | ୧୦ | |
| ୧୦ | | | | | ୧୦ | | ୧୦ | | | |

୮. ତଳେ ଦିଆଯାଇଥିବା ପ୍ରଶ୍ନର ଉତ୍ତର ମିଶାଣକରି ଦେଖାଅ-

ପ୍ରଥମ: ୫୪ଜଣ, ଦ୍ୱିତୀୟ: ୩୧ଜଣ, ତୃତୀୟ: ୮୬ଜଣ, ଚତୁର୍ଥ: ୪୨ଜଣ, ପଞ୍ଚମ: ୫୨ଜଣ, ୨୪ଜଣ

(୧) ପ୍ରଥମ ଓ ଦ୍ୱିତୀୟ ଡବାରେ ମିଶି କେତେଜଣ ? ୫୪ + ୩୬ = ୯୦

(୨) ତୃତୀୟ ଓ ଚତୁର୍ଥ ଡବାରେ ମିଶି କେତେଜଣ ? ☐ + ☐ = ☐

(୩) ପଞ୍ଚମ ଓ ଷଷ୍ଠ ଡବାର ଲୋକ ମିଶି କେତେ ? ☐ + ☐ = ☐

(୪) ପ୍ରଥମ ଓ ଷଷ୍ଠ ଡବାର ଲୋକ ମିଶି କେତେ ? ☐ + ☐ = ☐

(୫) ଦ୍ୱିତୀୟ ଓ ତୃତୀୟ ଡବାରେ କେତେ ଲୋକ ଅଛନ୍ତି ? ☐ + ☐ = ☐

(ଖ) ଦିଆଯାଇଥିବା ଚିତ୍ରରୁ ପାଖାପାଖି ଯେ କୌଣସି ଅଙ୍କ ଦୁଇଟିକୁ ନେଇ ସଂଖ୍ୟା ଗଢ଼ । ସେଥିରୁ ଦୁଇ ଦୁଇଟି ସଂଖ୍ୟାକୁ ମିଶାଅ ।

| | |
|---|---|
| ୧ | ୪ |
| ୨ | ୩ |
| ୩ | ୦ |

୯. ଖାଲି ଘର ପୂରଣ କର ।

କ) ୩୨ + ୧୫ + ୨୧ = ☐

ଖ) ୧୧ + ୧୨ + ୬୫ = ☐

ଗ) ୨୨ + ୬ + ୫୧ = ☐

ଘ) ୩୩ + ୧୨ + ୨୪ = ☐

ଙ) ୧ + ୧୩ + ୬୨ = ☐

୧୦. ମିଶାଣ ଫଳ ଖାଲି ଘରେ ଲେଖ ।

କ) ୫୦+୧୨+୨୪ = ☐

ଖ) ୪୨+୩୩+୧୪ = ☐

ଗ) ୨୨+୨୦+୬ = ☐

ଘ) ୪+୧୨+୨୩ = ☐

ଙ) ୨୦+୨୪+୧୫ = ☐

| | | |
|---|---|---|
| ୧୧. | ଗୋଟିଏ ବ୍ୟାଗ୍‌ରେ ୩୨ଟି ବାଇଗଣ ଓ ୨୬ଟି ଆଳୁ ଅଛି । ସେହି ବ୍ୟାଗ୍‌ରେ ଆଳୁ ଓ ବାଇଗଣ ମିଶି ମୋଟରେ କେତୋଟି ଅଛି ? | ବାଇଗଣ ୩୨ଟି<br>ଆଳୁ ୨୬ଟି<br>ମୋଟ ୫୮ଟି |
| ୧୨. | ଗୋଟିଏ ଟ୍ରକ୍‌ରେ ୩୬ ବସ୍ତା ଧାନ ଓ ୨୧ବସ୍ତା ଚାଉଳ ବୋଝେଇ ହୋଇଛି । ତେବେ ସେହି ଟ୍ରକ୍‌ରେ ଧାନ ଓ ଚାଉଳ ମିଶି କେତେ ବସ୍ତା ଅଛି ? | |
| ୧୩. | ଗୋଟିଏ ବସ୍‌ରେ ୫୪ ଜଣ ଲୋକ ଓ ଆଉ ଗୋଟିଏ ବସ୍‌ରେ ୩୫ଜଣ ଲୋକ ବସିଛନ୍ତି । ଦୁଇଟି ଯାକ ବସ୍‌ରେ ବସିଥିବା ମୋଟ ଲୋକ ସଂଖ୍ୟା କେତେ ? | |
| ୧୪. | ଗୋଟିଏ ବଲ୍‌ର ଦାମ ୧୫ ଟଙ୍କା ଓ ଗୋଟିଏ ବ୍ୟାଟ୍‌ର ଦାମ ୭୦ ଟଙ୍କା । କେତେ ଟଙ୍କା ହେଲେ ତୁମେ ଦୁଇଟି ଯାକ କିଣି ପାରିବ ? | |
| ୧୫. | ଜଣେ ଦୋକାନୀ ପ୍ରଥମ ଦିନ ୧୨ଟି, ଦ୍ୱିତୀୟ ଦିନ ୭ଟି ଓ ତୃତୀୟ ଦିନ ୨୦ଟି ନଡ଼ିଆ ବିକିଲା । ଏହି ତିନି ଦିନରେ ସେ ମୋଟରେ କେତୋଟି ନଡ଼ିଆ ବିକିଥିଲା ? | |
| ୧୬. | ଗୋଟିଏ ଗଛରେ ୨୨ଟି ଫୁଲ ଓ ଆଉ ଗୋଟିଏ ଗଛରେ ୧୫ଟି ଫୁଲ ଫୁଟିଛି । ଦୁଇଟି ଗଛରେ ଫୁଟିଥିବା ଫୁଲ ମିଶି କେତେ ? | |
| ୧୭. | ଗୋଟିଏ ଚକୋଲେଟ୍‌ର ଦାମ ୨୫ ପଇସା ଓ ଗୋଟିଏ ବେଲୁନ୍‌ର ଦାମ୍ ୫୦ପଇସା । ତେବେ ଗୋଟିଏ ଚକୋଲେଟ୍ ଓ ଗୋଟିଏ ବେଲୁନ୍ କିଣିଲେ ତୁମେ କେତେ ପଇସା ଦେବ ? | |
| ୧୮. | ଗୋଟିଏ ପଡ଼ିଆରେ ୨୦ଟି ବଳଦ, ୧୦ଟି ଗାଈ ଓ ୮ଟି ବାଛୁରୀ ଚରୁଥିଲେ । ତେବେ ସେହି ପଡ଼ିଆରେ ଚରୁଥିବା ବଳଦ, ଗାଈ ଓ ବାଛୁରୀଙ୍କ ମୋଟ ସଂଖ୍ୟା କେତେ ? | |
| ୧୯. | ଗୋଟିଏ ବିଦ୍ୟାଳୟର ପ୍ରଥମ ଶ୍ରେଣୀରେ ୨୪ଜଣ, ଦ୍ୱିତୀୟ ଶ୍ରେଣୀରେ ୨୧ଜଣ ଓ ତୃତୀୟ ଶ୍ରେଣୀରେ ୨୩ ଜଣ ପିଲା ପଢ଼ନ୍ତି । ବିଦ୍ୟାଳୟର ଏହି ଶ୍ରେଣୀରେ ମୋଟ ପିଲା ସଂଖ୍ୟା କେତେ ? | |
| ୨୦. | ଗୋଟିଏ ମିଠା ଦୋକାନରେ ୨୫ଟି ଲଡ୍ଡୁ, ୩୨ଟି ରସଗୋଲା ଓ ୨୨ଟି ଛେନାଗଜା ଅଛି । ତେବେ ସେହି ଦୋକାନରେ ସମୁଦାୟ କେତୋଟି ମିଠା ଅଛି ? | |

ମିଶାଣରେ ଏକକ ସ୍ଥାନର ଅଙ୍କ ଗୁଡ଼ିକର ମିଶାଣ ଫଳ ୧୦ ବା ତହିଁରୁ ଅଧିକ ହେଲେ କିପରି ମିଶାଇବା-

୪୫ ଓ ୩୭ର ମିଶାଣ




୪୫କୁ ୪ ଦଶ ୫ ଏକ ଲେଖାଯାଇ ପାରିବ ।
୩୭କୁ ୩ ଦଶ ୭ ଏକ ଲେଖାଯାଇ ପାରିବ ।
ପ୍ରଥମେ ଏକକ ଘରୁ ମିଶାଣ ଆରମ୍ଭ କରାଯିବ ।
୫ ଏକ + ୭ ଏକ = ୧୨ଏକ
୧୨ଏକ = ୧ଦଶ ୨ଏକ ହେବ
୨ଏକ ଏକ ସ୍ଥାନର ଗାର ତଳେ ରହିବ
୧ଦଶକୁ ଦଶ ସ୍ଥାନର ଉପରକୁ ନିଆଯିବ
୧ଦଶ+୪ଦଶ+୩ଦଶ=୮ଦଶ
୮ଦଶ+୨ଏକ
=୮୦+୨
=୮୨

| ଦଶ | ଏକ |
|---|---|
| (୧) | |
| ୪ | ୫ |
| ୩ | ୭ |
| ୮ | ୧ଦଶ ୨ |

=୮୨

## ଅଭ୍ୟାସ

୧. ପ୍ୟାଣ୍ଟର ଦାମ୍ ୨୮ ଟଙ୍କା ଓ ସାର୍ଟର ଦାମ୍ ୪୭ ଟଙ୍କା । ବାପା ଗୋଟିଏ ପ୍ୟାଣ୍ଟ ଓ ଗୋଟିଏ ସାର୍ଟ ତୁମପାଇଁ କିଣି ଦେଲେ । ସେ ଦୋକାନୀକୁ ମୋଟରେ କେତେ ଟଙ୍କା ଦେଇଥିବେ ?

ପ୍ୟାଣ୍ଟର ଦାମ୍ ୨୮ ଟଙ୍କା
ସାର୍ଟର ଦାମ୍ ୪୭ ଟଙ୍କା

ପ୍ୟାଣ୍ଟ ଓ ସାର୍ଟର ମୋଟ ଦାମ୍ ଟ —— + ଟ —— = ☐ ଟଙ୍କା

୨. ଗୋଟିଏ ଥାକରେ ୨୭ଖଣ୍ଡ ବହି ଓ ଆଉ ଗୋଟିଏ ଥାକରେ ୨୭ ଖଣ୍ଡ ବହି ଅଛି । ସେହି ଦୁଇଥାକରେ ଥିବା ବହି ମିଶି କେତେ ?

ଗୋଟିଏ ଥାକରେ ବହି ଅଛି ☐
ଆଉ ଗୋଟିଏ ଥାକରେ ବହି ଅଛି ☐

ଦୁଇଟି ଥାକରେ ଥିବା ମୋଟ ବହି ☐ + ☐ = ☐

୩. ଗୋଟିଏ ବସ୍‌ରେ ୧୬ ଜଣ ଲୋକ ବସିଥିଲେ । ଗୋଟିଏ ସ୍ଥାନରୁ ୨୧ ଜଣ ଲୋକ ବସ୍‌ରେ ଚଢ଼ିଲେ । ଆଉ ଗୋଟିଏ ସ୍ଥାନରୁ ୨୭ ଜଣ ସେହି ବସ୍‌ରେ ବସିଲେ । ତେବେ ସେହି ବସ୍‌ରେ ମୋଟ କେତେ ଜଣ ଲୋକ ବସି ଯାଇଥିଲେ ?

ବସ୍‌ରେ ପ୍ରଥମେ ଲୋକ ବସିଥିଲେ ୧୬
ଗୋଟିଏ ସ୍ଥାନରେ ବସ୍‌ରେ ଚଢ଼ିଲେ ୨୧
ଆଉ ଗୋଟିଏ ସ୍ଥାନରୁ ସେହି ବସ୍‌ରେ ବସିଲେ ୨୭

ସେହି ବସ୍‌ରେ ଯାଇଥିବା ମୋଟ୍ ଲୋକ ☐ + ☐ + ☐ = ☐

୪. ଗୋଟିଏ ବଗିଚାରେ ପ୍ରଥମ ପଟାଳିରେ ୨୩ଟି, ଦ୍ୱିତୀୟ ପଟାଳିରେ ୨୫ଟି ଓ ତୃତୀୟ ପଟାଳିରେ ୩୪ଟି ଫୁଲଗଛ ଲାଗିଛି । ସେହି ତିନୋଟି ପଟାଳିରେ ଲାଗିଥିବା ମୋଟ ଫୁଲଗଛ ସଂଖ୍ୟା କେତେ ?

ବଗିଚାର ପ୍ରଥମ ପଟାଳିରେ ଲାଗିଥିବା ଫୁଲଗଛ ☐
ଦ୍ୱିତୀୟ ପଟାଳିରେ ଲାଗିଥିବା ଫୁଲଗଛ + ☐
ତୃତୀୟ ପଟାଳିରେ ଲାଗିଥିବା ଫୁଲଗଛ + ☐

ସେହି ତିନିଟି ପଟାଳିରେ ଲାଗିଥିବା ଫୁଲଗଛ ☐ + ☐ + ☐ = ☐

୫. ଉଦାହରଣ ପରି ଖାଲି ସ୍ଥାନ ପୂରଣ କର ।

| | | | | | | | | | |
|---|---|---|---|---|---|---|---|---|---|
| ୫୦ | | | | | | | | | |
| ୫ | | | | | | | | | |
| ୫ | | | | | | | | | |
| ୫ | | | ୩୫ | | | | | | |
| ୫ | | | ୫ | | | | | | |
| ୫ | | | ୫ | | | | | | |
| ୫ | | | ୫ | | | ୨୦ | | | |
| ୫ | | | ୫ | | | | ୧୫ | | |
| ୫ | | | ୫ | | | | | ୧୦ | |
| ୫ | | | ୫ | | | | | | ୫ |
| ୫ | | | ୫ | | | | | | |

୬. ଖାଲି ସ୍ଥାନ ପୂରଣ କର ।




୭. ଖାଲି ସ୍ଥାନ ପୂରଣ କର ।

| + | ୧୧ | ୧୨ | ୧୩ | ୧୪ | ୧୫ | ୧୬ | ୧୭ | ୧୮ | ୧୯ | ୨୦ | ୨୧ |
|---|---|---|---|---|---|---|---|---|---|---|---|
| ୦ | ୧୧ | | | | ୧୫ | | | | | | |
| ୧ | | ୧୩ | | | | | | ୧୯ | | | |
| ୨ | | | | | ୧୭ | | ୧୯ | | | | ୨୩ |
| ୩ | ୧୪ | | | | | | | | ୨୨ | | |
| ୪ | | ୧୬ | | | ୧୯ | | ୨୧ | | | | |
| ୫ | | | ୧୮ | | | | | | | ୨୫ | |
| ୬ | | ୧୮ | | | | ୨୨ | | | | | |
| ୭ | | | | ୨୧ | | | | | ୨୬ | | |
| ୮ | | | | | | ୨୪ | | | | | ୨୯ |
| ୯ | | ୨୧ | | | | | | | | | |
| ୧୦ | | | | | ୨୫ | | | ୨୮ | | ୩୦ | |

୮. ତଳେ ଦିଆଯାଇଥିବା ଚିତ୍ରରେ ବାମରୁ ଡାହାଣକୁ କିମ୍ବା ଡାହାଣରୁ ବାମକୁ, ତଳୁ ଉପରକୁ କିମ୍ବା ଉପରୁ ତଳକୁ ଏବଂ କୋଣରୁ କୋଣକୁ ମିଶାଇ ମିଶାଣ ଫଳ ଲେଖ ।




୯. ତଳେ ଥିବା ଚିତ୍ରରେ ମଝି ସଂଖ୍ୟା ସହିତ ପାଖ ସଂଖ୍ୟାକୁ ମିଶାଇ ଖାଲି ଘରେ ମିଶାଣ ଫଳ ଲେଖ ।



୧୦ . ବିଲେଇ କେଉଁ ସଂଖ୍ୟା ଲେଖିବା ପରେ ମାଛକୁ ଖାଇ ପାରିବ ?




୧୧. 'କ'ଧାଡ଼ିର କେଉଁ ଯୋଡ଼ା ସହିତ 'ଖ' ଧାଡ଼ିର କେଉଁ ଯୋଡା ସମାନ ?

| 'କ' | | | 'ଖ' |
|---|---|---|---|
| ଟ୩୫+ଟ୨୫ | ୬୦ | | ଟ୫୮ + ଟ ୩୭ |
| ୪୮+୩୩ | | | ୫୪+୨୭ |
| ୬୫+୨୮ | | ୬୦ | ୩୮+୨୨ |
| ୬୬+୨୪ | | | ୭୧+୨୨ |
| ୬୯+୨୬ | | | ୫୫+୩୫ |

୧୨. ଖାଲି ଘର ପୂରଣ କର ।




୧୩. କେଉଁ ଛୋଟ ଗାଡ଼ି ୨ଟିର ଲୋକ, କେଉଁ ବଡ଼ ଗାଡ଼ିରେ ଯାଇ ପାରିବେ ?



























୧୪. ଖାଲି ଘରେ ଠିକ୍ ସଂଖ୍ୟା ଲେଖ ।



ଉପର ଚିତ୍ରରେ ମିଳିଥିବା ମିଶାଣଫଳକୁ ତଳଚିତ୍ରରେ ବାହାର କରି ଯୋଡ଼ ।



୧୫. ପାଞ୍ଚ ମିଶାଇ ମିଶାଇ ମିଶାଣ ଫଳକୁ ଯୋଡ଼ିଲେ ମୋତେ ପାଇବ । ଏବେ ଯୋଡ଼ ।



| | | |
|---|---|---|
| ୧୬. | ଗୋଟିଏ ଝୁଡ଼ିରେ ୩୮ଟି ଆମ୍ବ ଓ ୨୫ଟି ସେଓ ଅଛି । ତେବେ ସେହି ଝୁଡ଼ିରେ ମୋଟ କେତେ ଫଳ ଅଛି ? | ୩୮<br>+ ୨୫<br>ମୋଟ ୬୩ ଟି ଫଳ ଅଛି |
| ୧୭. | ଗୋଟିଏ ବସ୍‌ରେ ୩୫ ଜଣ ପୁଅ ପିଲା ଓ ୩୭ ଜଣ ଝିଅ ପିଲା ବସି ମେଳା ଦେଖିବାକୁ ଗଲେ । ତେବେ ସେହି ବସ୍‌ରେ ସମୁଦାୟ କେତେ ଜଣ ପିଲା ବସିଥିଲେ ? | |
| ୧୮. | ଟୁଇଁକିଲ୍‌ର ବୟସ ୧୨ ବର୍ଷ । ସୋନିର ବୟସ ଟୁଇଁକିଲ୍‌ର ବୟସଠାରୁ ୫ବର୍ଷ ଅଧିକ ହେଲେ, ଉଭୟଙ୍କ ବୟସ ମିଶି କେତେ ? | |
| ୧୯. | ସ୍ୱାଧୀନତା ଦିବସରେ ପ୍ରଥମ ଶ୍ରେଣୀର ୪୩ ଜଣ, ଦ୍ୱିତୀୟ ଶ୍ରେଣୀର ୩୨ ଜଣ ଓ ତୃତୀୟ ଶ୍ରେଣୀର ୧୭ ଜଣ ପିଲା ଉପସ୍ଥିତ ଥିଲେ । ତେବେ ସେଦିନ ସ୍ୱାଧୀନତା ଦିବସ ଉତ୍ସବରେ ଏହି ତିନି ଶ୍ରେଣୀର କେତେ ଜଣ ପିଲା ଯୋଗ ଦେଇଥିଲେ ? | |
| ୨୦. | ଢୁଢୁଲୁ ପରୀକ୍ଷାରେ ଗଣିତରେ ୩୬, ସାହିତ୍ୟରେ ୩୩ ଓ ପରିବେଶ ପାଠରେ ୨୧ ନମ୍ବର ରଖିଛି । ତେବେ ସେ ପରୀକ୍ଷାରେ ମୋଟ କେତେ ନମ୍ବର ରଖିଛି ? | |
| ୨୧. | ଗଣେଶ ପୂଜାପାଇଁ ପ୍ରଥମ ଶ୍ରେଣୀରୁ ୨୦ ଟଙ୍କା, ଦ୍ୱିତୀୟ ଶ୍ରେଣୀରୁ ୨୫ ଟଙ୍କା ଓ ତୃତୀୟ ଶ୍ରେଣୀରୁ ୩୫ ଟଙ୍କା ଆଦାୟ ହୋଇଥିଲା । ସେହି ତିନି ଶ୍ରେଣୀରୁ ଆଦାୟ ହୋଇଥିବା ମୋଟ ଟଙ୍କା କେତେ ? | |

| | | |
|---|---|---|
| ୨୨. | ମୁନ୍ନ ର ବୟସ ୧୮ ବର୍ଷ । ସନ୍ନର ବୟସ ତା' ଠାରୁ ୬ ବର୍ଷ ଅଧିକ । ଭାଇ ଭଉଣୀ ଦୁହିଁଙ୍କର ବୟସ ମିଶି କେତେ ? | |
| ୨୩. | ଡଙ୍ଗାରେ ପ୍ରଥମ ଥର ୩୯ ଜଣ ଓ ଦ୍ୱିତୀୟ ଥର ୩୭ ଜଣ ବସି ନଦୀ ପାର ହେଲେ । ତେବେ ଏହି ଦୁଇଥରରେ ସମୁଦାୟ କେତେ ଜଣ ନଦୀ ପାର ହୋଇଥିଲେ ? | |
| ୨୪. | ଇତିଶ୍ରୀ ୪୫ଟି ଓ ଶୁଭଶ୍ରୀ ୩୭ଟି ଫୁଲ ତୋଳି ଗୋଟିଏ ଡାଲାରେ ରଖିଲେ । ସେହି ଡାଲାଟିରେ ମୋଟରେ କେତୋଟି ଫୁଲ ରହିଲା ? | |
| ୨୫. | ବିଦ୍ୟାଳୟର ପ୍ରାର୍ଥନା ସଭାରେ ପ୍ରଥମ ଧାଡ଼ିରେ ୨୩ ଜଣ, ଦ୍ୱିତୀୟ ଧାଡ଼ିରେ ୨୯ଜଣ ଓ ତୃତୀୟ ଧାଡ଼ିରେ ୩୫ ଜଣ ପିଲା ଠିଆ ହୋଇଥିଲେ । ତେବେ ସେଦିନ ପ୍ରାର୍ଥନା ସଭାରେ ସେହି ତିନି ଧାଡ଼ିରେ ମୋଟରେ କେତେ ଜଣ ପିଲା ଠିଆ ହୋଇଥିଲେ ? | |

**କ'ଣ ଶିଖିବେ**

- ଦୁଇ ବା ତିନୋଟି ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟା (ଏକକ ଘରୁ ସଂଖ୍ୟା ନ ନେଇ ବା ନେଇ) ଯୋଗ କରିବେ ।
- ଏକ ସୋପାନରେ ସମାଧାନ ହେଲାଭଳି ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ (ଯୋଗ) କରିବେ ।
- '୦'ରୁ ୧୮ ମଧ୍ୟରେ ଦୁଇଟି ସଂଖ୍ୟାକୁ ମୌଖିକ ଯୋଗ କରିବେ , ଯେପରି ଯୋଗଫଳ ୧୮ରୁ ଅଧିକ ନ ହୁଏ ।

**ସୂଚନା**

ପ୍ରଥମେ ଏକକ ଘର ଅଙ୍କ ଗୁଡ଼ିକୁ ମିଶାଯାଏ । ପରେ ଦଶକ ଘର ଅଙ୍କଗୁଡ଼ିକୁ ମିଶାଯାଏ । (ଏକକ ଘରୁ ଦଶକ ଘରକୁ ନନେବା ସମୟରେ) ଏକକ ଘର ଅଙ୍କ ଗୁଡ଼ିକୁ ମିଶାଇ ଯୋଗଫଳକୁ ଏକ ଓ ଦଶକରେ ପ୍ରକାଶ କରାଯାଏ । ମିଶାଣଫଳ ସ୍ଥାନରେ ଏକକ ଅଙ୍କକୁ ଏକକ ଘରେ ରଖି ଦଶକ ଅଙ୍କକୁ ଦଶକ ଘରକୁ ନେଇ ଦଶକ ଅଙ୍କ ଗୁଡ଼ିକ ସହ ମିଶାଣ ଫଳ ଦଶକ ଘରେ ରଖାଯାଏ । ଉଦାହରଣ-

| | | | |
|---|---|---|---|
| ୨୭ | = | ୨ଦଶ | ୭ଏକ |
| ୩୫ | = | ୩ଦଶ | ୫ଏକ |
| | | ୫ଦଶ | ୧୨ଏକ |
| | | | (୧ଦଶ ୨ଏକ) |
| | + | ୧ଦଶ | ୨ଏକ |
| | | ୬ଦଶ | ୨ଏକ |

**ଆମେ ଜାଣିବା**

ଧନାତ୍ମକ ଗଣନ ସଂଖ୍ୟାଗୁଡ଼ିକୁ ମିଶାଇବା ବେଳେ ମିଶାଯାଇଥିବା ପ୍ରତ୍ୟେକ ସଂଖ୍ୟାଠାରୁ ମିଶାଣଫଳ ସବୁବେଳେ ବୃହତ୍ତର ।

**ଖେଳ**

**ରାଜା ହେବ କିଏ ?**

- ପ୍ରତି ଚାରିଜଣ ପିଲା ଗୋଲହୋଇ ବସିବେ । ଏହିଭଳି ସମସ୍ତ ପିଲା ଖେଳିବେ ପ୍ରତ୍ୟେକ ଦଳକୁ ୧ ସେଟ୍ ସଂଖ୍ୟାକାର୍ଡ଼୍ ଦିଆହେବ ।
- ୩,୬,୩,୪,୨୫,୧୨,୧୩,୧୫,୧୭,୧୮,୧୯,୨୧,୨୨,୨୪, ୨୫,୨୭,୩୦,୩୨ ସଂଖ୍ୟା ଲେଖା ହୋଇଥିବା ୧୬ଟି କାର୍ଡ଼କୁ ଫେଣ୍ଟି ସେଥିରୁ ମଝିରେ ୪ଟି କାର୍ଡ଼ ଓଲଟାଇ ରଖାଯିବ ଓ ବଳକା କାର୍ଡ଼କୁ ପ୍ରତ୍ୟେକ ପିଲାକୁ ୩ଟି ଲେଖାଏଁ କାର୍ଡ଼ ଦିଆଯିବ ।
- କାର୍ଡ଼ ପାଇବା ପରେ ୩ଟି କାର୍ଡ଼ର ସଂଖ୍ୟାକୁ ନିଜେ ନିଜେ ମିଶାଇ କହିବେ ।
- ଯଦି କାହାର ମିଶାଣ ଫଳ ୬୫ ହୋଇଯାଏ , ସେ ରାଜା ହେବ ଓ ଅଧଃକ୍ରମରେ ମିଶାଣଫଳକୁ ଦେଖି ମନ୍ତ୍ରୀ, ସେନାପତି ଓ କଟୁଆଳ ବଛା ହେବେ ।

**(ରାଜା ଛୋଟ ହେବାର ନିୟମ)**

- ମିଶାଣ ଫଳ ଯଦି କାହାର ୬୫ ନହୁଏ । ତେବେ ଜଣକ ପରେ ଜଣେ ମଝିରେ ଲେଟା ହୋଇ ପଡ଼ିଥିବା କାର୍ଡ଼ରୁ ଗୋଟିଏ କାର୍ଡ଼ ଆଣିବ ଓ ହାତରୁ ଗୋଟିଏ କାର୍ଡ଼ ଓଲଟାଇ ପକାଇ ଦେବ ।
- ଏବେ ନୂଆକାର୍ଡ଼କୁ ନେଇ ମିଶାଣ କରିବେ ।
- ଏହିପରି କାର୍ଡ଼କୁ ଅଦଳ ବଦଳ କରି କୌଣସି ପିଲାର ୬୫ ହେବା ପର୍ଯ୍ୟନ୍ତ

* ୧୮ ମଧ୍ୟରେ ଯୋଗକଲାବେଳେ ପ୍ରାରଂଭିକ ଅବସ୍ଥାରେ ସଂଖ୍ୟାଗୁଡ଼ିକୁ ସାଧାରଣ ଭାବେ ଗଣି ଯୋଗ କରାଯାଏ ।
  ଯଥା- ୧୨ ଓ ୨ ର ଯୋଗଫଳ ୧୪
* ଏକକ ଘରର ଯୋଗଫଳକୁ ୯ ମଧ୍ୟରେ ସୀମିତ ରଖି ପାଠରେ ଚାରିଟି ଉଦାହରଣ ଦିଆଯାଇଛି । ନିଜ ପରିବେଶର ଘଟଣା ସଂପର୍କିତ ଆଉ କିଛି ଉଦାହରଣ ଦେଇ ଏହିଭଳି ଯୋଗକ୍ରିୟାର ଅଭ୍ୟାସ କରାଯିବ । ପିଲାମାନେ କାର୍ଯ୍ୟାବଳୀରେ ଥିବା କାର୍ଯ୍ୟଫର୍ଦ୍ଦକୁ ପେନ୍‌ସିଲ୍‌ରେ ପୂରଣ କରିବେ ।
* କାର୍ଯ୍ୟାବଳୀରେ କିଛି ନମୁନା ଦିଆଯାଇଛି । ଏଗୁଡ଼ିକୁ କରାଇବା ସଙ୍ଗେ ସଙ୍ଗେ ଆଉକିଛି ଅଧିକା କାର୍ଯ୍ୟ ବି ପିଲାଙ୍କ ଦ୍ୱାରା କରାଯାଇପାରେ ।
* ୧୩ନଂ କାର୍ଯ୍ୟାବଳୀରେ ଦୁଇ ଦୁଇଟି ଛୋଟ ଗାଡ଼ିର ଲୋକ ମିଶି ୬ ପ୍ରକାର ଯୋଗଫଳ ସଂଖ୍ୟା ହୋଇପାରିବ । ଯଥା- ୨୫+୨୭=୫୨ ଜଣଙ୍କ ପାଇଁ ବଡ଼ ବସ୍ ନାହିଁ । ଏଭଳି କଥାଟି ପିଲାଙ୍କ ଦ୍ୱାରା ଆବିଷ୍କାର କରାଯିବା ପରେ ସମାଧାନ ଖୋଜାଯିବ । ୫୨ ଜଣ ଲୋକ - ୫୩,୫୪,୫୫ ଓ ୫୬ଟି ସିଟ୍ ଥିବା ବସ୍‌ରେ ଯାଇ ପାରିବେ ।
  ଏହିଭଳି ଅନ୍ୟ କେଉଁ ଦୁଇଟି ଛୋଟ ଗାଡ଼ିର ଲୋକ ମିଶି କେଉଁ କେଉଁ ଗାଡ଼ିରେ ଯାଇପାରିବେ ।- ତାଲିକା କରିବା ପାଇଁ ଦଳଗତ କାର୍ଯ୍ୟ କରାଯାଇପାରେ ।
* ବହିରେ ଥିବା କାର୍ଯ୍ୟାବଳୀକୁ ସରଳ କରିବା ପାଇଁ ଆବଶ୍ୟକ ସ୍ଥଳେ ନିଜ ପରିବେଶସ୍ଥିତ ବିଭିନ୍ନ ଉଦାହରଣର ଅଭ୍ୟାସ କରାଯାଇପାରେ- ଯଥା- କାର୍ଯ୍ୟାବଳୀ ୧୬ ପାଇଁ ଶ୍ରେଣୀର କୌଣସି ନିର୍ଦ୍ଦିଷ୍ଟ ପିଲାର ବଡ଼ଭାଇ/ ଭଉଣୀ ତା'ଠାରୁ କେତେ ବର୍ଷ ବଡ଼, ସେକଥା କହିବ । ସେଥିରୁ ବଡ଼ ଭାଇ, ଭଉଣୀଙ୍କ ବୟସ କେତେ ଜାଣିବେ । ତା'ପରେ ଉଭୟଙ୍କ ବୟସ ମିଶି କେତେ, ଆଲୋଚନା କରାଯିବ ।

ଖେଳ ଚାଲିବ ଓ ନିୟମ ଅନୁସାରେ ରାଜା, ମନ୍ତ୍ରୀ, ସେନାପତି, କଟୁଆଳ ବଛା ହେବ ।
(ରାଜା ପାଇଁ '୬୫' ବଦଳରେ ଅନ୍ୟ ବଡ଼ ସଂଖ୍ୟା ନିଆଯାଇ ପାରିବ ଓ ସେହି ଅନୁସାରେ ସଂଖ୍ୟା କାର୍ଡ଼ ବଦଳିବ)

**ମନେ ମନେ ହିସାବ କର**

ଶିକ୍ଷକ କେତେକ ପ୍ରଶ୍ନ ପିଲାମାନଙ୍କୁ ଦୁଇ ଦଳରେ ବସାଇ ପଚାରିବେ । ଯେପରି -
* ତୁମ ବଗିଚାରେ ୮ଟି ଧଳା କନିଅର ଗଛ ଓ ୭ଟି ନାଲି କନିଅର ଗଛ ଅଛି । ତେବେ ତୁମ ବଗିଚାରେ ମୋଟରେ କେତୋଟି କନିଅର ଗଛ ଅଛି ?
* ଗୋଟିଏ ଗଛରେ ୬ଟି ପାରା ଓ ୬ଟି କାଉ ବସିଥିଲେ । ତେବେ ମୋଟରେ ଗଛରେ କେତୋଟି ପକ୍ଷୀ ବସିଥିଲେ ?
* ତୁମର ୧୨ଟି ପଇସାର ଗୋଟିଏ ସେପ୍‌ଟିପିନ୍ କିଣିଲ ଓ ୫୦ ପଇସାର ଗୋଟିଏ ବେଲୁନ୍ କିଣିଲ । ଏହିପରି ପ୍ରଶ୍ନ ପରସ୍ପର ମଧ୍ୟରେ ପଚାରିବା ପାଇଁ ସୁଯୋଗ ଦେବେ ।

**ପ୍ରକଳ୍ପ କାର୍ଯ୍ୟ**
* ନିଜ ଶ୍ରେଣୀର ୩ ଦିନରେ ଉପସ୍ଥିତ ଥିବା ମୋଟ ପିଲା ସଂଖ୍ୟା ନିର୍ଣ୍ଣୟ କରିବାକୁ ଦିଆଯିବ ।
  (ଯଦି ଶ୍ରେଣୀର ପିଲାସଂଖ୍ୟା ୩୦ରୁ ବେଶି ଥାଏ ତେବେ କେବଳ ବାଳିକା କିମ୍ବା ବାଳକଙ୍କୁ ନେଇ ହିସାବ କରାଯିବ ।)

**ଆବଶ୍ୟକ ସାମଗ୍ରୀ**
* ସଂଖ୍ୟା କାର୍ଡ଼

ଏଇଟି କିଏ କହିପାରିବ ?
* ୧୦ ଠାରୁ ବଡ଼ ଓ ୨୦ରୁ ସାନ ଯେ କୌଣସି ଦୁଇଟି ସଂଖ୍ୟାକୁ ଯୋଗ କଲେ ଯୋଗଫଳ କେଉଁ ସଂଖ୍ୟାଠାରୁ ବଡ଼ ହେବ ଓ କେଉଁ ସଂଖ୍ୟାଠାରୁ ସାନ ହେବ ?

ପ୍ରସ୍ତୁତି

- ପିଲା ଏକ/ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାକୁ ସଜାଇ ଲେଖୁଛନ୍ତି କି ନାହିଁ ଦୃଷ୍ଟି ଦିଅନ୍ତୁ ।
- ପିଲାମାନେ ଦୁଇଟି ବା ତିନୋଟି ଏକ ଅଙ୍କ ବିଶିଷ୍ଟ ସଂଖ୍ୟାକୁ ମିଶାଇ ପାରୁଛନ୍ତି କି ନାହିଁ ତାହା ଦେଖନ୍ତୁ ।

ଗଳ୍ପ କଥନ

- ଚିତ୍ରସହ କୌତୁହଳ ପରିବେଶ ସୃଷ୍ଟି କରି ଶିକ୍ଷକ ପିଲାମାନଙ୍କୁ ଗପଟିକୁ କହିବେ ।
- ଗପ ସମ୍ପର୍କିତ ସଂକ୍ଷିପ୍ତ ଗାଣିତିକ ପ୍ରଶ୍ନ ପଚାରିବେ ।
  ଯଥା- ପାରା ମାନଙ୍କ ସଂଖ୍ୟା କେତେ ?
- ପାରାମାନଙ୍କ ପାଇଁ କେତୋଟି ଚ଼ଷମା ଦରକାର ହେବ ?
- ପେଚାମାନଙ୍କ ସଂଖ୍ୟା କେତେ ?
- ପେଚାମାନଙ୍କ ପାଇଁ କେତୋଟି ଚଷମା ଦରକାର ହେବ ?
- ପିଲାମାନେ କରିଥିବା ପୁସ୍ତକ ପ୍ରଦତ୍ତ କାର୍ଯ୍ୟାବଳୀ ଗୁଡ଼ିକୁ ତନଖି ଲେଖିବେ ।

ଚିତ୍ରକର

- ୧୪ ନମ୍ବର କାର୍ଯ୍ୟାବଳୀ ''ମିଶାଣ ଫଳକୁ ଯୋଡ଼ି ମୋ ନାଆଁ ଦିଅ''ରେ ପ୍ରଥମେ ୪୮ ସହ ତା'ତଳେ ଦିଆଯାଇଥିବା ସଂଖ୍ୟା ଗୁଡ଼ିକୁ ପିଲାମାନେ ଯୋଗ କରିବେ । ଯୋଗଫଳକୁ ଖାଲି ଘରେ ଲେଖିବେ । ଯୋଗଫଳ ଗୁଡ଼ିକୁ, ତଳେ ଥିବା ଘର ଭିତରେ ରେଖା ଦ୍ୱାରା ଯୋଗକଲେ ଗୋଟିଏ ଡଙ୍ଗାର ଚିତ୍ର ହେବ ।

- ପିଙ୍କୁ ୪୭ଟି କୋଳି ତୋଳିଲା ଓ ତା' ବଡ଼ହୋଇ ତା'ଠାରୁ ୮ଟି କୋଳି ଅଧିକ ତୋଳିଲା । ତେବେ ଦୁଇ ଜଣ ମିଶି ମୋଟରେ କେତୋଟି କୋଳି ତୋଳିଲା ?
- ଦୁଇଟି ଅଙ୍କରେ ଗଢ଼ା ସବୁଠାରୁ ବଡ଼ ସଂଖ୍ୟା ଓ ଦୁଇଟି ଅଙ୍କରେ ଗଢ଼ା ସବୁଠାରୁ ସାନ ସଂଖ୍ୟାର ଯୋଗଫଳ କେତେ ?

୯+୧୦+୧୧ = ୩୦

ସେହିପରି

୧୯+୨୦+୨୧ = ______

୧୯+୩୦+୩୧ = ______

୧୪+୧୫+୧୬ = ______

୨୪+୨୫+୨୬ = ______

୧୩+୧୦ = ୨୩

୨୩+୧୦ = ______

୩୩+୧୦ = ______

______+୧୦ = ______

______ +୧୦ = ______

- ୮୫ରେ ୮ର ସ୍ଥାନୀୟ ମୂଲ୍ୟ ଓ ସାଧାରଣ ମୂଲ୍ୟର ଯୋଗଫଳ କେତେ ?
- ଏମିତି ଲେଖିଲେ କ'ଣ ସୁବିଧା ?

```
  ୫୫
+ ୧୮
-----
  ୭୩
```

**ଦ୍ୱିତୀୟ ଏକକ ପରୀକ୍ଷଣ**

# ଥିଲା-ଗଲା= ରହିଲା

ସମୟ - ୩୬ ପିରିୟଡ୍





ଭିତରେ ରହିଲା କେତେ ?



ଜଗ୍‌ରେ ୧୫ଟି ଗୋଡ଼ି ଥିଲା ।

ମାଠିଆ ଭିତରକୁ ଅଜାଡ଼ିଲା ବେଳକୁ ୪ଟି ବାହାରେ ପଡ଼ିଗଲା ।

ତେବେ କେତୋଟି ଗୋଡ଼ି ମାଠିଆ ଭିତରେ ରହିଲା ?

| | |
|---|---|
| ଜଗ୍‌ରେ ଗୋଡ଼ି ଥିଲା | ୧୫ |
| ମାଠିଆ ବାହାରେ ପଡ଼ିଲା | ୪ |
| ମାଠିଆ ଭିତରେ ରହିଲା | ୧୧ |

ଉପର ଫେଡ଼ାଣଟି କିପରି କରାଯାଇଛି ଦେଖିବା;

| | | | |
|---|---|---|---|
| ୧୫ | = | ୧ଦଶ | ୫ଏକ |
| ୪ | = | | ୪ଏକ |

**ପ୍ରଥମେ ଏକକ ଘର ଫେଡ଼ାଣ କରାଗଲା**

୧୫ର ଏକକ ଘରେ ୫ ଅଛି ।

ତଳ ସଂଖ୍ୟାର ଏକକ ଘରେ ୪ ଅଛି ।

ତେଣୁ ୫ ଏକରୁ ୪ ଏକ ଫେଡ଼ାଣ କରାଗଲା ।

ଫେଡ଼ାଣ ଫଳର ଏକକ ଘରେ ୧ ରହିଲା ।

| | ଦଶ | ଏକ |
|---|---|---|
| | ୧ | ୫ |
| - | | ୪ |
| | ୧ | ୧ |

**ଦଶକର ଫେଡ଼ାଣ**

ତଳ ସଂଖ୍ୟାର ଦଶକ ଘରେ କିଛି ନାହିଁ ।

ଉପର ସଂଖ୍ୟାର ଦଶକ ଘରେ ୧ ଅଛି ।

ତେଣୁ ଉପର ସଂଖ୍ୟାର ଦଶକ ଘରେ ଥିବା ସଂଖ୍ୟାରୁ କିଛି ଫେଡ଼ାଗଲା ନାହିଁ ।

ତେଣୁ ଦଶକ ଘର ଅଙ୍କର ଫେଡ଼ାଣ ଫଳ ହେଲା ୧ ।

# ଅଭ୍ୟାସ

୧.



୯ଟି ମହମବତି ଜଳୁଥିଲା ।
୪ଟି ଲିଭି ଯାଇଛି ।
କେତୋଟି ମହମବତି ଜଳୁଛି ?

୨.



ଗୋଟିଏ କୁକୁଡ଼ାର କୋଠିରେ
୭ଟି ଅଣ୍ଡା ଥିଲା ।
ସେଥିରୁ ୪ଟି ଫୁଟାଇ ଛୁଆ ବାହାର କରିଛି ।
ଅଫୁଟା ଅଣ୍ଡା କେତୋଟି ଅଛି ?

୩.



୬ଟି ପେନ୍‌ସିଲ୍‌ରୁ ୪ଟିର ମୁନ ବାହାରିଛି ।
କେତୋଟି ପେନ୍‌ସିଲ୍ ମୁନ କରାଯାଇ ନାହିଁ ?

୪.



୮ଟି କପ୍‌ରୁ ଦୁଇଟି ଭାଙ୍ଗିଗଲା ।
ଭଲ କପ୍ କେତୋଟି ଅଛି ?



୫.



ମାଙ୍କଡ଼ ହାତରେ ୭ଟି ବେଲୁନ୍ ଥିଲା ।
୩ଟି ବେଲୁନ୍ ଉଡ଼ିଗଲା ।
ହାତରେ କେତୋଟି ବେଲୁନ୍ ରହିଲା ?

୬.



ହାତୀର ଗାଡ଼ିରେ ୮ଖଣ୍ଡ ଇଟା ଥିଲା ।
ଗାଡ଼ିରୁ ୩ଖଣ୍ଡ ଇଟା ପଡ଼ିଗଲା ।
ଗାଡ଼ିରେ କେତେଖଣ୍ଡ ଇଟା ରହିଲା ?

୭. ଉଦାହରଣରେ ଦେଖା ଯାଇଥିବା ପରି [ ] ତିଆରି କର ଓ ଉତ୍ତରଟି ଲେଖ ।

(କ) ୨୦,୧୮,୧୬,୧୪,୧୨, [୧୦] [୮] [ ] [ ] [ ]

(ଖ) ୪୫,୪୦,୩୫, [ ] [ ] [ ] [ ] [ ] [ ]

(ଗ) ୮୦,୭୦,୬୦, [ ] [ ] [ ] [ ] [ ]

୮. କଲମ ସହିତ ଠିକ୍ କ୍ୟାପଟି ଯୋଗ କର ।




୯. କାହାବସା କିଏ ?



ଥିଲା ୪୨ କାଠି । ସେଥିରୁ ଗଲା ୨୭ଟି କାଠି । ରହିଲା କେତେ ?




# ୪୨ରୁ ୨୭ର ଫେଡ଼ାଣ

୪୨= ୪ ଦଶ ୨ଏକ

୨୭= ୨ ଦଶ ୭ ଏକ

**ପ୍ରଥମେ ଏକକ ଘରୁ ଫେଡ଼ାଣ କରାଯିବ ।**

୪୨ ର ଏକକ ଘରେ ଅଛି ୨

୨୭ର ଏକକ ଘରେ ଅଛି ୭

୨ ଏକ ୭ ଏକ ଠାରୁ ସାନ

ଉପରେ ଥିବା ସାନ ଅଙ୍କ ୨ରୁ ୭ ଫେଡ଼ାଣ ହେବ ନାହିଁ ।

ଦଶଘରୁ ୧ ଦଶ ବା ୧୦ ଏକ ଅଣାଗଲା ।

ଏକକ ଘରେ ୧୦ଏକ ଓ ୨ଏକ ମିଶି ୧୨ ଏକ ହେଲା ।

୧୨ ଏକରୁ ୭ ଏକ ଫେଡ଼ାଣ କରାଗଲା ।

ଫେଡ଼ାଣ ଫଳର ଏକକ ଘରେ ୫ ରହିଲା ।

| | ଦଶ | ଏକ |
|---|---|---|
| | ୪ | ୨ |
| - | ୨ | ୭ |
| | ୧ | ୫ |

**ଦଶକ ଘର ଫେଡ଼ାଣ**

୩ ଦଶରୁ ୨ଦଶ ଗଲେ ୧ଦଶ ରହିଲା ।

ଫେଡ଼ାଣ ଫଳର ଦଶକ ଘରେ ୧ ରହିଲା ।

## ଅଭ୍ୟାସ

୧. [ ] ରେ ସଂଖ୍ୟା ଦୁଇଟିର ଫେଡ଼ାଣ ଫଳ ଲେଖ ।




୨. ଚକରେ ଥିବା ଖାଲି ଜାଗାରେ ଠିକ୍ ସଂଖ୍ୟା ଲେଖ ।




୩. ଯେ କୌଣସି ଦୁଇଟି ଘରକୁ ନେଇ ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟା ଗଢ଼ । ଏପରି ଯେତେ ସଂଖ୍ୟା ଗଢ଼ାଯାଇପାରୁଛି ସେମାନଙ୍କ ମଧ୍ୟରୁ ସବୁଠାରୁ ବଡ଼ ସଂଖ୍ୟାରୁ ସାନ ସଂଖ୍ୟାକୁ ଫେଡ଼ ।

| | |
|---|---|
| ୫ | ୩ |
| ୬ | ୯ |

୪. △ଟିଏ ଅଙ୍କନ କରି ତା ଭିତରେ ଫେଡ଼ାଣ ଫଳ ଲେଖ ।



୫. ◯ଟିଏ ତିଆରି କରି ତା ଭିତରେ ଫେଡ଼ାଣ ଫଳ ଲେଖ ।



୬. ଉଦାହରଣ ଦେଖି ଖାଲିଘର ପୂରଣ କର ।

୭. ଦେଖାଇ ଦିଆଯାଇଥିବା ପରି ଖାଲିଘର ଗୁଡ଼ିକ ପୂରଣ କର ।

| - | ୫୮ | ୪୧ | ୭୭ | ୩୨ | ୪୫ | ୬୭ | ୭୪ |
|---|---|---|---|---|---|---|---|
| ୭ | ୫୧ | | | | | | |
| ୬ | | | | | | ୬୧ | |
| ୮ | | | | | | | |
| ୧୦ | | | | | ୩୫ | | |
| ୫ | | | | | | | ୬୯ |
| ୩ | | | | | | | |
| ୪ | | | ୭୩ | | | | |

୮. କେଉଁ ପତ୍ର ସହ କେଉଁ ପାଖୁଡ଼ାର ସଂପର୍କ ଅଛି ତାହା ଦେଖି ମଝିରେ ଥିବା ଗୋଲେଇ ସହ ମିଳାଅ ।

୯. ପାତ୍ର ମଧ୍ୟରୁ ଫେଡ଼ାଣଫଳ ଖୋଜି ବାକ୍ସ ମଧ୍ୟରେ ଲେଖ ।

୭୫ – ୧୮ = □

୯୯ – ୨୯ = □

୬୬ – ୬୯ = □

୮୭ – ୪୮ = □

୮୫ – ୬୬ = □

୭୯ – ୪୫ = □

୭୩ – ୩୬ = □




୧୦. ଖାଲି ଘର ପୂରଣ କର ।

(କ) ୫୨ - ୩୮ = □

(ଖ) ୨୬ = ୭୩ - □

(ଗ) □ = ୯୫ - ୪୭

(ଘ) ୮୧ - □ = ୩୬

୧୧. ଚିତ୍ର ଭିତରେ ଦିଆ ଯାଇଥିବା ସଂଖ୍ୟା ମାନଙ୍କ ମଧ୍ୟରୁ ଯେ କୌଣସି ଦୁଇଟି ସଂଖ୍ୟାର ଫେଡ଼ାଣ ଫଳ ଯେଉଁଠି ଠିକ୍ ନାହିଁ, ସେହି ବାଟ ଦେଇ ମୂଷା ପଦାକୁ ବାହାରିବ । ସେହି ଫେଡ଼ାଣ ଫଳକୁ ଗୋଲ ବୁଲାଇ ଦେଖାଅ ।




୧୨. ଶୂନ୍ୟସ୍ଥାନ ପୂରଣ କର ।

୮୦ - ୨୯ = □

୬୪ - ୫୮ = □

୭୦ - □ = ୩୫

□ - ୩୯ = ୩୩

୫୦ - □ = ୧୪

୧୩. ତଳ ପାହାଚ ପୂରଣ କର ।




୧୪. ବେଙ୍ଗ ଖାଲି ଘର ପୂରଣ କରିପାରିବ ତ ? ତାକୁ ଟିକିଏ ସାହାଯ୍ୟ କର ।



୮୫ – ୨୩ = □

□ – ୩୫ = □

□ – ୧୮ = □

□ – ୯ = □

୧୫. ଗୋଟିଏ ଆମ୍ବ ଝୁଡ଼ିରେ ୮୫ଟି ଆମ୍ବ ଥିଲା । ସେଥିରୁ ୪୩ଟି ଆମ୍ବ ଆଚାର ହେଲା । ଝୁଡ଼ିରେ ଆଉ କେତେ ଆମ୍ବ ରହିଛି ?

ଝୁଡ଼ିରେ ଆମ୍ବ ଥିଲା [୮୫]

ସେଥିରୁ ଆଚାର ହେଲା [୪୩]

---

ଝୁଡ଼ିରେ ଆଉ ରହିଲା ୮୫-୪୩ = [ ] ଟି ଆମ୍ବ । ଉତ୍ତର ।

୧୬. ଗୋଟିଏ ଦୋକାନରେ ୭୫ଟି ନଡ଼ିଆ ଥିଲା । ସେଥିରୁ ୩୦ଟି ନଡ଼ିଆ ବିକ୍ରି ହୋଇଛି । ଆଉ କେତୋଟି ନଡ଼ିଆ ବିକ୍ରି ପାଇଁ ରହିଛି ?

ଦୋକାନରେ ନଡ଼ିଆ ଥିଲା = [ ]

ସେଥିରୁ ବିକ୍ରି ହୋଇଛି = [ ]

---

ବିକ୍ରି ପାଇଁ ରହିଛି [ ] - [ ] = [ ] ନଡ଼ିଆ

୧୭. ଜଣେ ମାଛବାଲା ପାଖରେ ୮୦ଟି ମାଛ ଥିଲା । ସେ ୩୫ଟି ମାଛ ବିକିବା ପରେ ତା ପାଖରେ ଆଉ କେତେ ମାଛ ଥିବ ?

ମାଛବାଲା ପାଖରେ ମାଛ ଥିଲା = [୮୦]

ସେଥିରୁ ବିକିଛି [୩୫]

---

ତା ପାଖରେ ଆଉ ମାଛ ଥିବ= [ ] - [ ] = [ ] ମାଛ

୧୮. ଅମିତା ଓ ମମତାର ବୟସ ମିଶି ୪୨ ବର୍ଷ । ଅମିତାର ବୟସ ୨୪ବର୍ଷ ହେଲେ, ମମତାର ବୟସ କେତେ ବର୍ଷ ?

ଅମିତାର ଓ ମମତାର ବୟସ ମିଶି= [ ] ବର୍ଷ

ଅମିତାର ବୟସ - [ ] ବର୍ଷ

---

ମମତାର ବୟସ = [ ] ବର୍ଷ - [ ] ବର୍ଷ= [ ] ବର୍ଷ

୧୯. ରାମବାବୁ ଝିଅ ବାହାଘର ପାଇଁ ଧୋତି ଓ ଶାଢ଼ି ମିଶି ୬୭ଖଣ୍ଡ କିଣିଥିଲେ । ସେଥିରୁ ୧୮ଖଣ୍ଡ ଧୋତି ହେଲେ, କେତେ ଖଣ୍ଡ ଶାଢ଼ି କିଣିଥିଲେ ?

ରାମବାବୁ ଧୋତି ଓ ଶାଢ଼ି ମିଶି କିଣିଥିଲେ = [ ] ଖଣ୍ଡ

ସେଥିରୁ ଧୋତି କିଣିଥିଲେ = [ ] ଖଣ୍ଡ

---

ରାମବାବୁ ଶାଢ଼ି କିଣିଥିଲେ= [ ] ଖଣ୍ଡ - [ ] ଖଣ୍ଡ= [ ] ଖଣ୍ଡ

କ'ଣ ଶିଖିବେ

- ୧୮ ମଧ୍ୟରେ ଦୁଇଟି ସଂଖ୍ୟାର ମୌଖିକ ଭାବେ ବିୟୋଗ ଫଳ ଜାଣିବେ ।
- ଦ ଶକ ଘରୁ ଧାର କରି ବା ଧାଡ଼ି ନକରି ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାକୁ ବିୟୋଗ କରିବେ ।
- ଏକ ସୋପାନରେ ସମାଧାନ ହେଲା ଭଳି ଦୈନନ୍ଦିନ ଜୀବନରେ ସମସ୍ୟା ସମାଧାନ (ବିୟୋଗ)କରିବେ ।

ସୂଚନା

- ଏକକ ଘରୁ ଧାର ନକରି ବିୟୋଗ କରିବା ବେଳେ ଉପର ସଂଖ୍ୟାର ଏକକ ଘରୁ ତଳ ସଂଖ୍ୟାର ଏକକ ସ୍ଥାନର ଅଙ୍କଟି ବିୟୋଗ କରାଯାଏ । ସେହିପରି ଉପର ସଂଖ୍ୟାର ଦଶକ ସ୍ଥାନରୁ ଅଙ୍କରୁ ତଳ ସଂଖ୍ୟାର ଦଶକ ସ୍ଥାନର ଅଙ୍କ ବିୟୋଗ କରାଯାଏ ।

  ୩୬ = ୩ଦଶ ୬ଏକ

  ୨୪= ୨ଦଶ ୪ଏକ

  ୧ଦଶ ୨ଏକ

- ଏକକ ସ୍ଥାନକୁ ଦଶକ ସ୍ଥାନରୁ ଧାର ଆଣିବା ବେଳେ:- ଫେଡ଼ା ଯାଉଥିବା ସଂଖ୍ୟାର ଏକକ ଘର ଅଙ୍କ ବଡ଼ ହେଲେ ଦଶକ ଘରୁ ଏକ ଦଶ ଆଣି ଏକକ ଘର ଅଙ୍କ ସହ ମିଶାଯାଏ । ଏହି ମିଶାଣ ଫଳରୁ ଏକକ ଘର ଅଙ୍କଟି ଫେଡ଼ାଯାଇ ଫେଡ଼ାଣ ଫଳର ଏକକ ସ୍ଥାନରେ ଲେଖାଯାଏ ।
- ଦ୍ୱିତୀୟ ପର୍ଯ୍ୟାୟରେ ଦଶକ ସ୍ଥାନରୁ ଏକ ଦଶ ଯାଇଥିବାରୁ ଦଶକ ସ୍ଥାନ ଅଙ୍କରୁ ଏକ ଦଶ ବିୟୋଗ କରି ବିୟୋଗ କରାଯାଇଥିବା ସଂଖ୍ୟାର ଦଶକ

ଆଉ କେତେ ରହିଲା ?

ଚାରୋଟି ପିଲାରେ ଦୁଇଟି ଦଳ ।

ପ୍ରତି ଦଳକୁ ଦୁଇଭାଗ କରାଯିବ ।

ଦୁଇଦଳ ମଝିରେ ୮୦ଟି ଗୋଡ଼ି ରହିବ ।

ଗୋଟିଏ ଦଳ ଅନ୍ୟ ଦଳକୁ ଗୋଡ଼ି ମୁଠାଏ ଦେଇ ଗଣିବାକୁ କହିବ ।

ସେମାନେ ଗୋଡ଼ିକୁ ଗଣି ଗୋଡ଼ିର ପରିମାଣ ଖାତାରେ ଲେଖିବେ ।

ପୁଣି ଗୋଡ଼ିନେଇ ଥିବା ଦଳ ସେମାନଙ୍କ ଗୋଡ଼ିରୁ କିଛି ଗୋଡ଼ି ବାହାର କରି ଗଣିବେ ।

ସେମାନେ ସେହି ଗୋଡ଼ିକୁ ଗଣି ପ୍ରଥମେ ଲେଖିବା ସଂଖ୍ୟା ତଳେ ଫେଡ଼ାଣ ଚିହ୍ନ ଦେଇ ଗୋଡ଼ି ସଂଖ୍ୟା ଲେଖିବେ ।

ବର୍ତ୍ତମାନ ସେମାନେ କହିବେ କେତେ ଗୋଡ଼ି ଥିଲା ? କେତେ ଗୋଡ଼ି ଗଲା ଓ କେତେ ଗୋଡ଼ି ରହିଲା ଓ ଖାତାରେ ଲେଖିବେ ।

ଏବେ ଫେଡ଼ାଣ କରିଥିବା ଦଳ ଆର ଦଳକୁ ପୂର୍ବଭଳି କାର୍ଯ୍ୟ ଦେଇ ଫେଡ଼ାଣ କରିବାକୁ କହିବେ ।

ଏହିପରି ଅଦଳ ବଦଳ ହୋଇ ଖେଳ ଚାଲୁ ରହିବ । ଅଧିକ ଠିକ୍ କରିଥିବା ଦଳ ବିଜୟୀ ହେବ ।

ଧାରନେଇ ଫେଡ଼ାଣ କାର୍ଯ୍ୟ କରିବାକୁ ହେଲେ ଉପରୋକ୍ତ ଶିକ୍ଷଣକାର୍ଯ୍ୟ ପ୍ରଣାଳୀ ଅବଲମ୍ବନ କରାଯିବ ମାତ୍ର ନିମ୍ନ ମତେ ଶିକ୍ଷଣ କାର୍ଯ୍ୟ କରାଯିବ ।

ଧାର ନେଇ ବିୟୋଗ ଶିକ୍ଷଣକାର୍ଯ୍ୟ କଲାବେଳେ -

ଯଥା- ୬୨ରୁ ୩୫, ୭୫ରୁ ୪୭ ଇତ୍ୟାଦି ଫେଡ଼ାଣ ପ୍ରଶ୍ନକାର୍ଡ଼ ନିଆଯିବ ।

ସ୍ଥାନର ଅଙ୍କକୁ ବିୟୋଗ କରାଯାଏ । ବିୟୋଗ ଫଳର ଦଶକ ସ୍ଥାନରେ ଲେଖାଯାଏ ।

୬୨ = ୬ଦଶ + ୨ଏକ = ୫ଦଶ + ୧୨ଏକ
୨୭ = ୨ଦଶ + ୭ଏକ = ୨ଦଶ + ୭ ଏକ
(–)

୩ ଦଶ + ୫ଏକ

- ପୁସ୍ତକରେ ଦିଆଯାଇଥିବା ଛବିଗୁଡ଼ିକ ଦେଖି ବିୟୋଗ ବିଷୟରେ ଧାରଣା ଦେବେ ।
- ପୁସ୍ତକରେ ପ୍ରଦତ୍ତ କାର୍ଯ୍ୟାବଳୀ ଗୁଡ଼ିକ ପୁସ୍ତକରେ ସମାଧାନ କରିବ । ଖାଲି ସ୍ଥାନରେ ଉତ୍ତର ଲେଖିବେ ।
- ଯେଉଁମାନେ ପ୍ରଶ୍ନଗୁଡ଼ିକୁ ସମାଧାନ କରିବାକୁ ଅକ୍ଷମ ହେବେ ସେମାନଙ୍କ ପାଇଁ ପ୍ରତିକାର ମୂଳକ ଶିକ୍ଷଣ କାର୍ଯ୍ୟ ବ୍ୟବସ୍ଥା କରିବେ । ଶିକ୍ଷଣ ଦକ୍ଷତାକୁ ପିଲାଙ୍କ ଦୃଷ୍ଟିରେ ରଖି ନିଜ ପରିବେଶ, ଦୈନନ୍ଦିନ ଘଟଣା, ଅଭିଜ୍ଞତା ଅନୁସାରେ ସରଳ ଶିକ୍ଷଣ କାର୍ଯ୍ୟ ଦିଆଯିବ ।
- କାର୍ଯ୍ୟବଳୀର ୧୫ନଂ କାର୍ଯ୍ୟରେ ପରବର୍ତ୍ତୀ ସଂଖ୍ୟା ଗୁଡ଼ିକ ପ୍ରତ୍ୟେକ ସ୍ଥାନରେ କମି କମି ବା ବଢ଼ୁ ବଢ଼ୁ ଯାଇଛି । ସେଭଳି ୮ ପରିବର୍ତ୍ତେ ୫, ୭, ୬, ୯ ଭଳି ବିଭିନ୍ନ ବ୍ୟବଧାନରେ ସଂଖ୍ୟା ଲେଖିବା ପାଇଁ କିଛି ଅଧିକା ଶିକ୍ଷଣ କାର୍ଯ୍ୟ କରାଯାଇପାରେ ।

ଉଦାହରଣ- ଫେଡ଼ାଣ ପ୍ରଶ୍ନ କାର୍ଡ଼    ୬୨    ୭୫
- ୩୫    -୪୭

- ଯେଉଁ ଦଳର ପାଳି ପଡ଼ିବ ସେହି ଦଳ ଫେଡ଼ାଣ ପ୍ରଶ୍ନ କାର୍ଡ଼ରୁ ଗୋଟିଏ ଉଠାଇ ଅନ୍ୟ ଦଳକୁ ଦେବ ।
- ଅନ୍ୟ ଦଳ ପ୍ରଶ୍ନ କାର୍ଡ଼ରେ ଲେଖା ଥିବା ସଂଖ୍ୟା ଅନୁଯାୟୀ ଗୋଡ଼ି ଆଣି, ତଳେ ଦିଆଯାଇଥିବା ଉଦାହରଣ ଭଳି ଫେଡ଼ାଣ କାର୍ଯ୍ୟ କରିବେ । ପିଲାପାଇଥିବା ସଂଖ୍ୟା କାର୍ଡ଼ ଅନୁସାରେ ଗୋଡ଼ିସଂଖ୍ୟା

| | | | | | दश | ଏକ |
|---|---|---|---|---|---|---|
| ୬୨ = ୬ଟି ଦଶ ଟିକିଆ ପୁଡ଼ିଆ | ଓ | ୨ଟି ଗୋଡ଼ି | = | | ୬ | ୨ |
| - ୩୫ = ୩ଟି ଦଶ ଟିକିଆ ପୁଡ଼ିଆ | ଓ | ୫ଟି ଗୋଡ଼ି | = | | ୩ | ୫ |

= ୫ଟି ୧୦ ଟିକିଆ ପୁଡ଼ିଆ    ୧ଟି ୧୦ ଟିକିଆ ପୁଡ଼ିଆ + ୨ଗୋଡ଼ି
- ୩ଟି ୧୦ ଟିକିଆ ପୁଡ଼ିଆ    ୫ଟି ଗୋଡ଼ି

= ୫ଟି ୧୦ ଟିକିଆ ପୁଡ଼ିଆ    ୧୨ଟି ଗୋଡ଼ି
- ୩ଟି ୧୦ ଟିକିଆ ପୁଡ଼ିଆ    ୫ଟି ଗୋଡ଼ି

୨ଟି ୧୦ଟିକିଆ ପୁଡ଼ିଆ    ୭ଟି ଗୋଡ଼ି
= ୫ ଦଶ    ୧୨ଏକ
୩ଦଶ    ୫ଏକ

୨ ଦଶ    ୭ଏକ

**ମନେ ମନେ ହିସାବ କରି କହ ।**

- ପିଲାମାନଙ୍କୁ ଦୁଇଟି ଦଳରେ ବିଭକ୍ତ କରାଯିବ ସେମାନେ ମୁହାଁମୁହିଁ ହୋଇ ବସିବେ ।
- ଗୋଟିଏ ଦଳ ଅନ୍ୟ ଦଳକୁ ମନେ ମନେ ହିସାବ କରି କହିବା ପାଇଁ କେତୋଟି ପ୍ରଶ୍ନ ପଚାରିବେ ।
- ମୁନା ବଜାରରୁ ୧ ଡଜନ୍ ଅଣ୍ଡା ଆଣି ଆସୁଥିଲା, ବାଟରେ ସେହି ଅଣ୍ଡାରୁ ୪ଟି ଅଣ୍ଡା ଫାଟିଗଲା, ମୁନା ପାଖରେ କେତୋଟି ଅଣ୍ଡା ରହିଲା ।
- ଲିମା ପାଖରେ ୫୦ ପଇସା ଥିଲା ସେଥିରୁ ସେ ୩୦ ପଇସା ଦେଇ ଗୋଟିଏ ବେଲୁନ୍ କିଣିଲା । ତା' ପାଖରେ ଆଉ କେତେ ପଇସା ରହିଲା ?
- ଗୋଟିଏ ସଂଖ୍ୟାରୁ କେତେ ବିୟୋଗ କଲେ ବିୟୋଗଫଳ ସେହି ସଂଖ୍ୟା ହେବ ?

  ଏହିପରି ଗୋଟିଏ ଦଳ ନିଜେ ପ୍ରଶ୍ନ ଚିନ୍ତାକରି ଅନ୍ୟଦଳକୁ ପଚାରିବେ । ଅନ୍ୟଦଳ ଉତ୍ତର ଦେବ । ଏହିପରି ଗୋଟିଏ ଦଳ ୧୦ଟି ପ୍ରଶ୍ନ ପଚାରିବା ପରେ ପରବର୍ତ୍ତୀ ଦଳ ପ୍ରଶ୍ନ ପଚାରିବେ ।
- ଯେଉଁ ଦଳ ଅନ୍ୟ ଦଳର ଅଧିକ ସଂଖ୍ୟକ ପ୍ରଶ୍ନର ଉତ୍ତର ଦେବାକୁ ସକ୍ଷମ ହେବ ସେହି ଦଳ ଜିତିବ ।

**ତୃତୀୟ ଏକକ ପରୀକ୍ଷଣ**

ଉପକରଣ ◆ କିଛି ଗୋଡ଼ି, ପ୍ରଶ୍ନ କାର୍ଡ଼ (ଆବଶ୍ୟକ ସଂଖ୍ୟକ)

କିଏ କହି ପାରିବ :-

୧. ଦୁଇଟି ଅଙ୍କରେ ଗଢ଼ା ସବୁଠାରୁ ବଡ଼ ସଂଖ୍ୟା ଓ ସବୁଠାରୁ ସାନ ସଂଖ୍ୟା ମଧ୍ୟରେ ବିୟୋଗ ଫଳ କେତେ ?

୨. ଟିକୁ ପାଖରେ ୭୫ଟି କୋଳି ଅଛି । ଲିକୁ ପାଖାରେ ଟିକୁଠାରୁ ୧୮ଟି କୋଳି କମ୍ ଅଛି । ଦୁଇଜଣଙ୍କ ପାଖରେ ମୋଟରେ କେତୋଟି କୋଳି ଅଛି ?

୩. ୮୭ରେ ୮ର ସ୍ଥାନୀୟ ମୂଲ୍ୟ ଓ ସାଧାରଣ ମୂଲ୍ୟର ଅନ୍ତରଫଳ କେତେ ?

୪. ୫୭ରେ କେତେ ଯୋଗ କଲେ ଯୋଗଫଳ ୮୨ ହେବ ?

# ସୁନାପିଲା

**ସମୟ - ୧୪ ପିରିୟଡ୍**

କୁସୁମ କିଛି ଟଙ୍କା ପଇସା କୁମ୍ଭୀରେ ରଖେ । କୁମ୍ଭୀଟିକୁ ହାତରେ ଧରି ଏପାଖ ସେପାଖ କରିବାରେ ତା'ର ଭାରି ଖୁସି । ଦିନେ କୁମ୍ଭୀଟି ହାତରୁ ଖସି ପଡ଼ିଲା । କ'ଣ ହେଇଥିବ ? ମାଟି କୁମ୍ଭୀଟି ଭାଙ୍ଗିଗଲା । ମୁଦ୍ରାଗୁଡ଼ିକ ବିଛାଡ଼ି ହୋଇ ପଡ଼ିଗଲା । ଆସ ଦେଖିବା କ'ଣ ସବୁ ସେଥିରେ ଥିଲା ।

## ଅଭ୍ୟାସ

୧.(କ) କୁମ୍ଭୀଟିରେ କେତୋଟି ମୁଦ୍ରା ଥିଲା ?

(ଖ) କେତୋଟି ଟଙ୍କାକିଆ ମୁଦ୍ରା ଥିଲା ?

(ଗ) ୫,୧୦,୨୦,୨୫ ଓ ୫୦ ପଇସା ଏବଂ ୧ଟଙ୍କା, ୨ଟଙ୍କା ଓ ୫ଟଙ୍କାର ମୁଦ୍ରା ଗୁଡ଼ିକ ଅଲଗା ଅଲଗା ଥାକରେ ରଖି ଗଣ ।

(ଘ) କାହାର ସଂଖ୍ୟା କେତେ ?

୨. କେଉଁ ମୁଦ୍ରାରୁ କେତେ, କାହା ସହିତ ସମାନ ହେବ ?

(୨୫) + (୨୫) = (୫୦)

(୫୦) + (୫୦) = (୧)

(୧) + (୧) = (୨)

୨୫ ପଇସା+୨୫ ପଇସା=୫୦ ପଇସା

୫୦ ପଇସା+୫୦ ପଇସା=୧୦୦ ପଇସା ବା ୧ଟଙ୍କା

୧ଟଙ୍କା+୧ଟଙ୍କା= ୨ଟଙ୍କା

୩. ଖାଲି ଘରେ ଲେଖ ।

୧ଟଙ୍କାରେ କେତୋଟି ୨୫ ପଇସା ମୁଦ୍ରା ହେବ ? [ ]

୨ଟଙ୍କାରେ କେତୋଟି ୫୦ ପଇସା ମୁଦ୍ରା ହେବ ? [ ]

୨ଟଙ୍କାରେ କେତୋଟି ୨୫ ପଇସା ମୁଦ୍ରା ହେବ ? [ ]

ଗୋଟିଏ ୫ଟଙ୍କା ମୁଦ୍ରା ଦେଲେ, ୧ଟଙ୍କା ମୁଦ୍ରା ପାଇବା [ ]

ଗୋଟିଏ ୫ଟଙ୍କା ମୁଦ୍ରା ଦେଲେ, ୫୦ ପଇସା ମୁଦ୍ରା ପାଇବା [ ]

ଗୋଟିଏ ୫ଟଙ୍କା ମୁଦ୍ରା ଦେଲେ, ୨୫ ପଇସା ମୁଦ୍ରା ପାଇବା [ ]

୨ଟଙ୍କା ମୁଦ୍ରା [ ] ଟି ଓ ୧ଟଙ୍କା ମୁଦ୍ରା [ ] ଟି = ୫ଟଙ୍କା

୪. ତଳେ ଥିବା କାଗଜ ମୁଦ୍ରା (ନୋଟ୍) ଗୁଡ଼ିକ ଦେଖି, ପ୍ରତ୍ୟେକର ରୂପ, ଆକାର ଓ ପରିମାଣ ମନେରଖ ।













୧ଟି ୧୦ଟଙ୍କା ନୋଟ୍ = [ ] ଟି ୨ଟଙ୍କା ନୋଟ୍ ।

୧ଟି ୨୦ଟଙ୍କା ନୋଟ୍ = [ ] ଟି ୫ଟଙ୍କା ନୋଟ୍ ।

୧ଟି ୧୦୦ଟଙ୍କା ନୋଟ୍ = [ ] ଟି ୧୦ଟଙ୍କା ନୋଟ୍ ।

୫. ଦିଆଯାଇଥିବା ମୁଦ୍ରାର ମୂଲ୍ୟକୁ ମିଶାଇ ମୋଟ ମୂଲ୍ୟ ଲେଖ ।

(କ) ୫୦ପଇସା + ୨୦ ପଇସା = ☐ ପଇସା

(ଖ) ୨୫ପଇସା + ୨୦ ପଇସା = ☐ ପଇସା

(ଗ) ୨୫ ପଇସା + ୨୦ ପଇସା + ୫ ପଇସା = ☐ ପଇସା

(ଘ) ୨୫ ପଇସା + ୧୦ ପଇସା + ୨୫ପଇସା = ☐ ପଇସା

୬. କେଉଁ ଜିନିଷର ମୂଲ୍ୟ, କେଉଁ ଘରର ମୁଦ୍ରା ମୂଲ୍ୟ ସହ ସମାନ ?

| | |
|---|---|
| ୮୦ ପଇସା | 50, 10 PAISE |
| ୭୫ ପଇସା | 50, 20, 10 PAISE, 10 PAISE |
| ୬୦ ପଇସା | 50, 25, 5 |
| ୯୦ପଇସା | 50, 20, 5 |
| ଏକଟଙ୍କା | 50, 25, 25 |

୭. ତଳେ ଦିଆଯାଇଥିବା ଖେଳନା ଗୁଡ଼ିକର ମୂଲ୍ୟ ଦେଖ । ପଚରା ଯାଇଥିବା ଖେଳନା ଗୁଡ଼ିକର ମୂଲ୍ୟ ମିଶାଇ ଉତ୍ତର ଲେଖ ।



(କ) ପେନ୍‌ସିଲ ଏବଂ ରବରର ମୂଲ୍ୟ [୫୦ ପ] + [୨୫ପ] = [୭୫ ପଇସା]

(ଖ) ରବର ଏବଂ ବଲ୍‌ର ମୂଲ୍ୟ ☐ + ☐ = ☐

(ଗ) ବଲ ଏବଂ କଣ୍ଢେଇର ମୂଲ୍ୟ ☐ + ☐ = ☐

(ଘ) ଚଷମା ଏବଂ ପଙ୍ଖାର ମୂଲ୍ୟ ☐ + ☐ = ☐

(ଙ) କଣ୍ଢେଇ ଏବଂ ପଙ୍ଖାର ମୂଲ୍ୟ ☐ + ☐ = ☐

(ଚ) ରବର ଏବଂ ପଙ୍ଖାର ମୂଲ୍ୟ ☐ + ☐ = ☐

୮. ମଝି ମୁଦ୍ରାସହ ସମାନ ହେବାପାଇଁ ଖାଲିଘରେ କେଉଁ ମୁଦ୍ରାର ଚିତ୍ର କେତୋଟି ରହିବ ?



୯. ତୁମ ପାଖରେ କଛି ୨୦ ପଇସା ଓ ୧୦ ପଇସା ମୁଦ୍ରା ଅଛି । ୩୦ ପଇସା ମୂଲ୍ୟର ଗୋଟିଏ ରବର କିଣିବା ପାଇଁ ଗୋଟିଏ ୨୦ପଇସା ମୁଦ୍ରା ସହ କେତୋଟି ୧୦ପଇସା ମୁଦ୍ରା ଦେବ ?

୧୦. ହରି ପାଖରେ ଦୁଇଟି ୨୫ ପଇସା ମୁଦ୍ରା ଓ ତିନୋଟି ୧୦ ପଇସା ମୁଦ୍ରା ଅଛି । ୬୦ ପଇସା ମୂଲ୍ୟର ଗୋଟିଏ ଚକୋଲେଟ୍ କିଣିବା ପାଇଁ ସେ କେଉଁଥିରୁ କେତୋଟି ମୁଦ୍ରା ଦେବ ?

୧୧. ଗୋଟିଏ ପେନ୍‌ସିଲ କିଣିବା ପାଇଁ ତୁମ ମାଆ ଗୋଟିଏ ୫୦ ପଇସି, ଦୁଇଟି ୨୦ ପଇସି ଓ ଗୋଟିଏ ୧୦ ପଇସି ଦେଲେ । ପେନ୍‌ସିଲଟିର ଦାମ କେତେ ?

୧୨. ଜିନି ଗୋଟିଏ ବେଲୁନ୍ କିଣି ଦୁଇଟି ୨୫ ପଇସି, ଗୋଟିଏ ୨୦ପଇସି ଓ ଗୋଟିଏ ୫ ପଇସି ଦେଲା । ବେଲୁନ୍‌ଟିର ଦାମ୍ କେତେ ?

୧୩. ଦୁଇଟି ବିସ୍କୁଟର ଦାମ ୮୦ ପଇସା । ପିଙ୍କୁ ଓ ରିଙ୍କୁ ଦୁଇଟି ବିସ୍କୁଟ୍ କିଣି ଦୋକାନୀକୁ ଗୋଟିଏ ଟଙ୍କା ଦେଲେ । ଦୋକାନୀ କେତୋଟି ଦଶ ପଇସା ଫେରାଇବ ?

୧୪.

(କ) ବୀଣା ପାଖରେ ପାଞ୍ଚଟି ୧୦ ପଇସି ଓ ରୀନା ପାଖରେ ସାତଟି ୧୦ ପଇସି ଥିଲା । ଉଭୟଙ୍କ ପାଖରେ ମିଶି କେତେ ପଇସା ଥିଲା ?

(ଖ) ରୀନା କେତୋଟି ୧୦ ପଇସି ବୀଣାକୁ ଦେଲେ ଉଭୟଙ୍କ ପାଖରେ ସମାନ ପଇସା ହେବ ?

୧୫. ଗୋଟିଏ ମିଠାଇର ଦାମ ୫୦ ପଇସା ଓ ଗୋଟିଏ ଗଜାର ଦାମ ୪୦ ପଇସା । ରୁନୁ ପାଖରେ ୧ ଟଙ୍କା ଅଛି । ସେ ଗୋଟିଏ ମିଠାଇ ଓ ଗୋଟିଏ ଗଜା କିଣିଲା । ଦୋକାନୀ ତା'କୁ କେତେ ପଇସା ଫେରାଇବ ?

**କ'ଣ ଶିଖିବେ**

- ବିଭିନ୍ନ ପ୍ରକାର ବାସ୍ତବ ଅଥବା ଖେଳଣା ମୁଦ୍ରା ମିଶାଇ ଏକ ଟଙ୍କା ମୂଲ୍ୟ ପର୍ଯ୍ୟନ୍ତ ହିସାବ କରିବେ ।
- ମୁଦ୍ରାମାନଙ୍କ ମୂଲ୍ୟର ଯୋଗଫଳ ଓ ବିୟୋଗଫଳ ଏକଟଙ୍କା ମଧ୍ୟରେ ସୀମିତ ରଖି ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ କରିବେ ।
- ୫ ପଇସା ଓ ୧୦ ପଇସାର ଗୁଣିତକ ମାନଙ୍କୁ ବ୍ୟବହାର କରି (ଏକଟଙ୍କା ମୂଲ୍ୟ ପର୍ଯ୍ୟନ୍ତ ହିସାବକରି) ଦୈନନ୍ଦିନ ଜୀବନର ସମସ୍ୟାଗୁଡ଼ିକର ମୌଖିକ ସମାଧାନ କରିବେ ।

**ସୂଚନା**

- ସୁନା ପିଲା ଗଳ୍ପ ମାଧ୍ୟମରେ ପାଞ୍ଚ ପଇସି ଠାରୁ ପାଞ୍ଚ ଟଙ୍କାମୁଦ୍ରା ପର୍ଯ୍ୟନ୍ତ ଆଠ ପ୍ରକାର ମୁଦ୍ରାର ପରିଚୟ (ଆକାର ପ୍ରକାର) ଓ ମୂଲ୍ୟ ସମ୍ବନ୍ଧରେ ଧାରଣା ଦିଆଯାଇଛି ।

**ପ୍ରସ୍ତୁତି**

- ଦୃଢ଼ ଧାରଣା ପାଇଁ ବାସ୍ତବ ମୁଦ୍ରା କିମ୍ବା ଖେଳଣା ମୁଦ୍ରା ବ୍ୟବହାର କରନ୍ତୁ ।

**ଟଙ୍କା ପଇସା ଖେଳ**

- ପିଲାମାନଙ୍କୁ ଗୋଲ୍ କରି ଠିଆ କରାନ୍ତୁ । ଜଣେ ସେମାନଙ୍କ ମଧ୍ୟରୁ ଖେଳ ପରିଚାଳନା କରୁ ।
- ପାଞ୍ଚ ପଇସିଠାରୁ ଟଙ୍କାଏ ପର୍ଯ୍ୟନ୍ତ ମୁଦ୍ରା ଗୁଡ଼ିକର ନାମ ଜଣକ ପରେ ଜଣେ କହନ୍ତୁ ।
- ଏକଟଙ୍କା କହିବା ପିଲା ମଝିକୁ ଆସିବ ଓ ଖେଳ ପରିଚାଳନା କରିବ ।
- ପୂର୍ବରୁ ଖେଳ ପରିଚାଳନା କରୁଥିବା ପିଲା ସେହି ସ୍ଥାନରେ ଠିଆ ହେବ ।
- ଏହିପରି ୩/୪ ରାଉଣ୍ଡ ପର୍ଯ୍ୟନ୍ତ ଖେଳ ଚାଲିବ ।

**କାର୍ଯ୍ୟ**

- କିଛି ପିଲା ଦୋକାନୀ ଓ କିଛି ପିଲା ଗ୍ରାହକ ହୋଇ ଏକ ଟଙ୍କା ମଧ୍ୟରେ ଖେଳଣା ମୁଦ୍ରା ବ୍ୟବହାର କରି କିଣା ବିକା କରିବେ ।

- ପିଲାମାନଙ୍କୁ ଦୁଇ ଦଳରେ ବିଭକ୍ତ କରାଯିବ କାର୍ଡ଼ ବୋର୍ଡ଼ରେ କେତେକ ପ୍ରଶ୍ନ ଲେଖାଯାଇ ମଝିରେ ରଖାଯିବ । ଗୋଟିଏ ଦଳ ଗୋଟିଏ କାର୍ଡ଼ ଉଠାଇ ଅନ୍ୟ ଦଳକୁ ଦେଖାଇବ । ସେଥିରେ ଲେଖାଥିବା ପ୍ରଶ୍ନର ମୌଖିକ ଉତ୍ତର ଅନ୍ୟଦଳ ୧/୨ ମିନିଟ୍ ମଧ୍ୟରେ ଦେବ ।
  ଏହିପରି ଦୁଇ ତିନି ରାଉଣ୍ଡ ଖେଳ ହେବ ।
  ପ୍ରଶ୍ନ ଏଭଳି ହୋଇପାରେ ———
  ଗୋଟିଏ ବେଲୁନ୍‌ର ଦାମ୍ ୫୦ ପଇସା ଓ ଗୋଟିଏ ଚକୋଲେଟ୍‌ର ଦାମ ୨୫ ପଇସା ତୁମେ ଦୋକାନରୁ ଗୋଟିଏ ବେଲୁନ୍ ଓ ଗୋଟିଏ ଚକୋଲେଟ୍ କିଣିଲ ଦୋକାନୀକୁ କେତେ ପଇସା ଦେବ ?

- ପିଲାମାନଙ୍କୁ ଦୁଇ ଦଳରେ ବିଭକ୍ତ କରାଯିବ । ପ୍ରତି ଦଳକୁ ବିଭିନ୍ନ ସଂଖ୍ୟକ ୫, ୧୦, ୨୦, ୨୫, ୫୦ ପଇସି ଓ ଏକ ଟଙ୍କାର ମୁଦ୍ରା ଦିଆଯିବ । ପ୍ରଥମେ ଗୋଟିଏ ଦଳ ଏକ ନିର୍ଦ୍ଦିଷ୍ଟ ସଂଖ୍ୟକ ମୁଦ୍ରା ଦେଖାଇ ଅନ୍ୟ ଦଳକୁ ଏହି ମୁଦ୍ରା ବଦଳରେ ଅନ୍ୟ କେଉଁ ମୁଦ୍ରା କେତୋଟି ମିଳିବ ତାହା କହିବେ । ଏହି ମୁଦ୍ରା ଗୁଡ଼ିକର ମୂଲ୍ୟ ଏକଟଙ୍କା ମଧ୍ୟରେ ସୀମିତ ରହୁଥିବ । ଏହିପରି ଦଳ ବଦଳ କରି ୩/୪ ରାଉଣ୍ଡ ଖେଳହେବ । ପିଲା ଦୁଇ ଦଳ ହେବେ । ସାମନା ସାମନି ବସିବେ । ମଝିରେ ଗୋଟିଏ ବାକ୍ସରେ କିଛି ଚିରକୁଟି

**ଶିକ୍ଷକଙ୍କ କାର୍ଯ୍ୟ**

- ଶିକ୍ଷକ ସୁନାପିଲା ଗପଟି ପିଲାଙ୍କୁ ଅର୍ଦ୍ଧ ବୃତ୍ତାକାରରେ ବସାଇ କହିବେ । ମଝିରେ ଗଳ୍ପ ସମ୍ପର୍କିତ ପ୍ରଶ୍ନ ପଚାରିବେ ଓ ଗପଟିକୁ ଶେଷକରି ନିମ୍ନଲିଖିତ ପ୍ରଶ୍ନ ପଚାରିବେ । ଯେପରି-
- କୁମ୍ଭାରେ କେତୋଟି ମୁଦ୍ରା ଥିଲା ?
- ସେ ମୁଦ୍ରାଗୁଡ଼ିକ କ'ଣ କ'ଣ ?
- କେଉଁ କେଉଁ ମୁଦ୍ରା କେତୋଟି ନେଲେ ଏକ ଟଙ୍କା ହେବ ?

**ଉପକରଣ**

- ୫ ପଇସି, ୧୦ ପଇସି, ୨୦ ପଇସି, ୨୫ ପଇସି, ୫୦ ପଇସି, ଓ ଏକ ଟଙ୍କାର ଖେଳଣା ମୁଦ୍ରା ଓ ଅସଲି ମୁଦ୍ରା ।

**ଷାଣ୍ମାସିକ ପରୀକ୍ଷା**

ରହିବ । ପ୍ରତି ଥର ଗୋଟିଏ ଚିରିକୁଟି ବାହାରିବ । ଚିରକୁଟିରେ ଥିବା ମୂଲ୍ୟ ଦେବା କେତେ ଅଧିକା ପ୍ରକାର ଅଲଗା ଅଲଗା ମୁଦ୍ରା ଦେଇ ହେବ, ତାହାର ତାଲିକା କରି ଉଭୟ ଦଳ ଉପସ୍ଥାପନ କରିବେ । ସେହି ଅନୁସାରେ ପଏଣ୍ଟ ପାଇବେ ।

ଯଥା- ୨୦ ପଇସା=
- ୪ଟି ୫ ପଇସି
- ୨ଟି ୧୦ ପଇସି
- ୧ଟି ୧୦ ପଇସି ଓ ୨ଟି ୫ ପଇସି
- ୧ଟି ୨୦ ପଇସି

୩୦ ପଇସା=
- ୬ଟି ୫ ପଇସି
- ୩ଟି ୧୦ ପଇସି
- ୨ଟି ୧୦ ପଇସି ଓ ୨ଟି ୫ ପଇସି
- ୧ଟି ୧୦ ପଇସି ଓ ୪ଟି ୫ ପଇସି
- ୧ଟି ୨୫ ପଇସି ଓ ୧ଟି ୫ ପଇସି
- ୧ଟି ୨୦ ପଇସି ଓ ୧ଟି ୧୦ ପଇସି
- ୧ଟି ୨୦ ପଇସି ଓ ୨ଟି ୫ ପଇସି ଇତ୍ୟାଦି

**ଶିଶୁବ୍ୟାଙ୍କ୍**

ଗୋଟିଏ ପିଲାଙ୍କ ବ୍ୟାଙ୍କ୍ କରାଯିବ । ଜଣେ ପିଲା ବସି ଖେଳଣା ମୁଦ୍ରା ଦେଣ ନେଣ କରିବ । ସେହି ବ୍ୟାଙ୍କରେ ବିଭିନ୍ନ ସଂଖ୍ୟକ ୫, ୧୦, ୨୦, ୨୫, ୫୦ ପଇସି ଓ ଟଙ୍କିକିଆ ମୁଦ୍ରା ରହିବ ।

- ପ୍ରତି ପିଲାଙ୍କୁ ଏକ ଟଙ୍କା ଲେଖାଥିବା କାର୍ଡ଼ ଦିଆଯିବ । ସେମାନେ ନିଜ ନିଜର ଚାହିଦା ମୁତାବକ ଏକ ଟଙ୍କା ପାଇଁ ବିଭିନ୍ନ ମୁଦ୍ରା ବ୍ୟାଙ୍କରୁ ଭଙ୍ଗାଇ ଆଣିବେ ।

**ପ୍ରକଳ୍ପ କାର୍ଯ୍ୟ**

- ପିଲାମାନେ ଏକ ଟଙ୍କା ମଧରେ ଦୋକାନରେ ମିଳୁଥିବା ଜିନିଷର ତାଲିକା କରିବେ ଓ ଏକ ଟଙ୍କାରେ କି କି ଜିନିଷ କିଣି ହେବ ସେମାନଙ୍କର ନାମ ଲେଖିବେ ।

**ଉପକରଣ**

- ମୌଖିକ ପ୍ରଶ୍ନ ଥିବା କାର୍ଡ଼ ୫, ୧୦, ୨୦, ୨୫, ୫୦ ପଇସା ଓ ଏକ ଟଙ୍କାର ଖେଳଣା ମୁଦ୍ରା

# କୁନା ନୂଆ କଥା ଜାଣିଲା

ସମୟ - ୩୮ ପିରିୟଡ୍





ତୁ ମିଶେଇ ମିଶେଇ କହିଲୁ ।
ମିଶାଣ ନ କରି, ମୁଁ କେମିତି ହିସାବ କରୁଛି ଦେଖ ।
ଜଣେ ୨ଟି ଲେଖାଏଁ ବେଲୁନ୍ ନେଲେ ।
୫ ଜଣ ପିଲା ନେଲେ-
୨ବେଲୁନ୍ X ୫ = ୧୦ଟି ବେଲୁନ୍
ତେଣୁ ୨ କୁ ୫ ଥର ମିଶାଇବା ଯାହା
(୨+୨+୨+୨+୨=୧୦)
୨କୁ ୫ରେ ଗୁଣିବା ତାହା-(୨ X ୫=୧୦)
୨ର ୫ଗୁଣ ୧୦
ସେହିପରି –
୭ଜଣ ପିଲା ୨ଟି ଲେଖାଏଁ ବେଲୁନ୍ ନେଲେ-
୨ଟି ବେଲୁନ୍ X ୭ = ୧୪ଟି ବେଲୁନ୍
ତେଣୁ ୨ର ୭ଗୁଣ=୧୪
ତୁ ୨ର ୮ ଗୁଣ
୯ଗୁଣ
୧୦ଗୁଣ ହିସାବ କର ।

# ଅଭ୍ୟାସ



୧. ଏମାନେ ଜହ୍ନ ରାଇଜକୁ ଯିବାକୁ କେତୋଟି ବେଲୁନ୍ ଦରକାର ହେବ ?



ଜଣେ ଜହ୍ନ ରାଇଜକୁ ଯିବାକୁ ☐ ଟି ବେଲୁନ୍ ଦରକାର
☐ ଜଣ ଯିବେ ☐ X ☐ = ☐
ଏମାନେ ଜହ୍ନ ରାଇଜ ଯିବାକୁ ☐ ବେଲୁନ ଦରକାର ।

୨.



| | |
|---|---|
| ୨+୨+୨=୬ | ୨ X ୩ =୬ |
| ୨+୨+୨+୨+୨=୧୦ | ୨ X ☐ =୧୦ |
| ☐ | ☐ X ୬ =୧୨ |
| ୨+୨+୨+୨+୨+୨+୨ | ୨ X ☐ =୧୪ |

୩.

୩ + ______ = ____
୬ x ୩ = ____

୪ + ______ = ____
୪ x ____ = ______

୫ଟି + ______ = ____
____ x ____ ____ = ୨୫

୨ x ୩ = ୬
୨ + ୨ + ୨ = ୬

୩ଟି ପତ୍ର x ୪
୩ + ______ = ____

୪. ଉଦାହରଣ ଦେଖ କର ।

୫ଟି ୫ର ଯୋଗ = ୨୫
୫ x ୫ = ୨୫

୩ଟି ____ ଯୋଗ = ୧୮
____ x ____ = ____

୫.

୩ x ୩ = ୩ର ୩ଗୁଣ

୨ x ୫ = ୨ର ____

୬.

(କ) ୩+୩+୩+୩ = ୩ x ୪ = ____
(ଖ) ୫+୫+୫+୫+୫ = ୫ x ____ = ____
(ଗ) ୧+୧+୧+୧+୧ = ____ x ୫ = ____
(ଘ) ୨+୨+୨+୨+୨+୨ = ୨ x ____ = ____

୭.

(କ) ୫ଟି ୪ର ଯୋଗ = ୪ x ୫ = ୪ର ୫ ଗୁଣ
(ଖ) ୮ଟି ୩ର ଯୋଗ = ୩ x ____ = ୩ର ____ ଗୁଣ
(ଗ) ୬ଟି ୨ର ଯୋଗ = ____ x ୬ = ____ ର ୬ ଗୁଣ
(ଘ) ୪ଟି ୩ର ଯୋଗ = ୩ ____ ୪ = ୩ର ୪ ଗୁଣ

୮.

(କ) ୫+୫+୫+୫ = ୫ର ୪ଗୁଣ = ____
(ଖ) ୪+୪+୪+୪+୪+୪ = ୪ର ____ ଗୁଣ = ____
(ଗ) ୧+୧+୧+୧ = ____ ର ୪ଗୁଣ = ____
(ଘ) ୩+୩+୩+୩+୩+୩+୩+୩ = ୩ର ____ ଗୁଣ = ____

## ୯. ଉଦାହରଣ ଦେଖି ଖାଲି ଘର ପୂରଣ କର ।




## ୧୦. ଗଣ ଓ ଖାଲି ଘର ପୂରଣ କର ।



୫ + ୫ + ୫ = □

୩ଟା ୫ = □ ବା □ x □ = □



□ + □ + □ + □ = □

୪ଟା ୩ ବା = □ x □ = □



□ + □ + □ + □ + □ = □

୫ଟା ୪ □ ବା □ x □ = □



□ + □ + □ + □ + □ = □

୫ଟା ୫ = □ ବା □ x □ = □

୧୧.

ଲୁଚି ଲୁଚିକା ଫସଲ ଖାଏ ।

ଏକ ଡିଆଁରେ ୩ ହାତ ଯାଏ ।

(କ) ୩ ଡିଆଁ=୩+୩+[ ] = ୩ x ୩ = [୯] ହାତ

(ଖ) ୪ଡିଆଁ=୩+[ ]+[ ]+[ ]=[ ] x [ ] = [ ] ହାତ




(ଗ) ୬ଡିଆଁ = [୩] + [ ] + ______
= [ ] x [ ] = [ ] ହାତ

(ଘ) ୮ଡିଆଁ = [୩] + [ ] + ______
= [ ] x [ ] = [ ] ହାତ

(ଙ) ୧୦ଡିଆଁ = [୩] + [ ] + ______
= [ ] x [ ] = [ ] ହାତ

## ୨ର ଗୁଣନ ସାରଣୀ

| | | | ଆମେ ପଢୁ |
|---|---|---|---|
| ୨ | ୨ / ୧ / ୨ | ୨ର ୧ ଗୁଣ ୨ | ଦୁଇ କେ ଦୁଇ |
| ୨ + ୨ | ୪ / ୨ / ୨ | ୨ର ୨ ଗୁଣ ୪ | ଦୁଇ ଦୁଗୁଣେ ଚାରି |
| ୨ + ୨ + ୨ | ୬ / ୩ / ୨ | ୨ର ୩ ଗୁଣ ୬ | ଦୁଇ ତିରି ଛଅ |
| ୨ + ୨ + ୨ + ୨ | ୮ / ୪ / ୨ | ୨ର ୪ ଗୁଣ ୮ | ଦୁଇ ଚଉ ଆଠ |
| ୨ + ୨ + ୨ + ୨ + ୨ | ୧୦ / ୫ / ୨ | ୨ର ୫ ଗୁଣ ୧୦ | ଦୁଇ ପଞ୍ଚା ଦଶ |
| ୨ + ୨ + ୨ + ୨ + ୨ + ୨ | ୧୨ / ୬ / ୨ | ୨ର ୬ ଗୁଣ ୧୨ | ଦୁଇ ଷୋ ବାର |
| ୨ + ୨ + ୨ + ୨ + ୨ + ୨ + ୨ | ୧୪ / ୭ / ୨ | ୨ର ୭ ଗୁଣ ୧୪ | ଦୁଇ ସତା ଚଉଦ |
| ୨ + ୨ + ୨ + ୨ + ୨ + ୨ + ୨ + ୨ | ୧୬ / ୮ / ୨ | ୨ର ୮ ଗୁଣ ୧୬ | ଦୁଇ ଅଷ୍ଟା ଷୋହଳ |
| ୨ + ୨ + ୨ + ୨ + ୨ + ୨ + ୨ + ୨ + ୨ | ୧୮ / ୯ / ୨ | ୨ର ୯ ଗୁଣ ୧୮ | ଦୁଇ ନୂଆ ଅଠର |
| ୨ + ୨ + ୨ + ୨ + ୨ + ୨ + ୨ + ୨ + ୨ + ୨ | ୨୦ / ୧୦ / ୨ | ୨ର ୧୦ ଗୁଣ ୨୦ | ଦୁଇ ଦଶା କୋଡ଼ିଏ |

## ୩ର ଗୁଣନ ସାରଣୀ

| | ଆମେ ଲେଖୁ | ଆମେ ପଢୁ |
|---|---|---|
| ୩ [୩] | ୩ X ୧ = ୩ | ତିନି କେ ତିନି |
| ୩+୩ [୬] | ୩ X ୨ = ୬ | ତିନି ଦୁଣେ ଛ |
| ୩+୩+୩ [୯] | ୩ X ୩ = ୯ | ତିନି ତିରି ନଅ |
| ୩+୩+୩+୩ [୧୨] | ୩ X ୪ =୧୨ | ତିନି ଚଉ ବାର |
| ୩+୩+୩+୩+୩ [୧୫] | ୩ X ୫ =୧୫ | ତିନି ପଞ୍ଚା ପନ୍ଦର |
| ୩+୩+୩+୩+୩+୩ [୧୮] | ୩ X ୬ =୧୮ | ତିନି ଷୋ ଅଠର |
| ୩+୩+୩+୩+୩+୩+୩ [୨୧] | ୩ X ୭ =୨୧ | ତିନି ସତା ଏକୋଇଶି |
| ୩+୩+୩+୩+୩+୩+୩+୩ [୨୪] | ୩ X ୮ =୨୪ | ତିନି ଅଷ୍ଟାଁ ଚବିଶି |
| ୩+୩+୩+୩+୩+୩+୩+୩+୩ [୨୭] | ୩X୯ =୨୭ | ତିନି ନୁଆଁ ସତେଇସି |
| ୩+୩+୩+୩+୩+୩+୩+୩+୩+୩ [୩୦] | ୩ X ୧୦ = ୩୦ | ତିନି ଦଶା ତିରିଶି |

୩ର ଗୁଣନଖନ୍ଦା ବା ୩ କ ପଣକିଆ

| | | | | | | | | | |
|---|---|---|---|---|---|---|---|---|---|
| ୩ | ୬ | ୯ | ୧୨ | ୧୫ | ୧୮ | ୨୧ | ୨୪ | ୨୭ | ୩୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୩ | ୩ | ୩ | ୩ | ୩ | ୩ | ୩ | ୩ | ୩ | ୩ |

୧୨. ୪ ର ଗୁଣନ ଖନ୍ଦା ଲେଖ ।

| | | | | | | | | | |
|---|---|---|---|---|---|---|---|---|---|
| ୪ | | | | | | | | | |
| ୧ | ୨ | | | | | | | | |
| ୪ | ୪ | | | | | | | | |

୧୩. ୫ର ଗୁଣନ ଖନ୍ଦା ଓ ୧୦ର ଗୁଣନ ଖନ୍ଦା ଲେଖ ।

୧୪ . ଗୁଣନ କରି ଖାଲି ଘର ପୂରଣ କର ।

| X | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
|---|---|---|---|---|---|---|---|---|---|---|
| ୧ | ୧ | ୨ | ୩ | ୪ | | | | ୮ | | ୧୦ |
| ୨ | ୨ | ୪ | | | ୧୦ | | ୧୪ | | ୧୮ | |
| ୩ | | | ୯ | | ୧୫ | | ୨୧ | | ୨୭ | ୩୦ |
| ୪ | ୪ | ୮ | | ୧୬ | | ୨୪ | | ୩୨ | | |
| ୫ | ୫ | | | ୨୦ | | ୩୦ | ୩୫ | | | ୫୦ |
| ୧୦ | ୧୦ | | | ୪୦ | | ୬୦ | ୭୦ | | | |

୧୫. ଉଦାହରଣ ଦେଖି ଖାଲି ଘର ପୂରଣ କର ଯେପରି-

(କ) ୨,୪,୬,୮, [୧୦], [୧୨], [୧୪], [୧୬]

(ଖ) ୪,୮,୧୨,୧୬, [ ], [ ], [ ], [ ]

(ଗ) ୧୨,୧୫, [ ], [ ], [ ], [ ]

(ଘ) ୧୫,୨୦, [ ], [ ], [ ], [ ]

(ଙ) ୪୦,୫୦, [ ], [ ], [ ], [ ]

୧୬. ଖାଲି ଘର ପୂରଣ କର ।



୧୭ . ତାଳଗଛ ମୂଳେ ପହଞ୍ଚିଲା ବେଳକୁ ସିଂହ ମୁଣ୍ଡରେ କେତୋଟି ଚକ ଥିବ ?

୧୮. ଖାଲି ସ୍ଥାନ ପୂରଣ କର ।

୪ × ୨ ୩ × ୩

୮ ×

୧୯. ଆକାଶତରୀ ଉଡ଼ାଜାହାଜ ଓ ପୁଷ୍ପକ ଉଡ଼ାଜାହାଜ କେଉଁ ଗେଟ୍ ଦେଇ ଗଲେ କେଉଁ ବିମାନଘାଟୀରେ ପହଞ୍ଚିବ । (ଗେଟ୍‌ର ସଂଖ୍ୟା ଓ ବିମାନଘାଟୀର ସଂଖ୍ୟା ଗୋଟିଏ ଗୁଣନ ଖନ୍ଦାରେ ଥିବା ସଂଖ୍ୟା ହୋଇଥିବେ ।)

୨୦. କେଉଁ ବାଘ କେଉଁ ହରିଣକୁ ଧରିବ ତୀର ଚିହ୍ନ ଦେଇ ଚିହ୍ନାଅ ।



୨୧. କେଉଁ ତାଲା କେଉଁ ନମ୍ବର ଚାବିରେ ଖୋଲିବ ଗାରଟାଣି ଯୋଡ଼ । ଯେପରି-



୨୨. ଖାଲି ଘର ପୂରଣ କର

(କ) ୫ x ୭ =୩୫
(ଖ) ୪ x [ ] =୨୦
(ଗ) ୩ x [ ] =୧୮
(ଘ) ୨ x ୬ =[ ]
(ଙ) ୨ x ୫ =[ ]
(ଚ) ୫ x [ ] =୪୫
(ଛ) ୪ x [ ] =୪
(ଜ) ୫ x [ ] =୧୫
(ଝ) ୪ x ୩ =[ ]
(ଞ) ୧୦ x ୬ =[ ]
(ଟ) ୩ x [ ] =୨୭
(ଠ) ୨ x [ ] =୧୮

୨୩. ଖାଲି ଘର ପୂରଣ କର

(କ) ୪ x [ ] =୫ଟି ୪ର ଯୋଗଫଳ
(ଖ) ୫ x [ ] =୩ଟି ୫ର ଯୋଗଫଳ
(ଗ) ୩ x [ ] =୩ଟି ୩ର ଯୋଗଫଳ
(ଘ) ୨ x [ ] =୮ଟି ୨ର ଯୋଗଫଳ

୨୪. ଉପଯୁକ୍ତ ଚିହ୍ନ ଦିଅ

୫ [ ] ୩ = ୧୫
୨ [ ] ୬ = ୧୨
୪ [ ] ୩ = ୭
୧୦ [ ] ୫ = ୧୫
୪ [ ] ୨ = ୮

୨୫. ଗୋଟିଏ ଶ୍ରେଣୀର ପିଲାମାନେ ଡ୍ରିଲ୍ କରିବା ପାଇଁ ଛିଡ଼ା ହୋଇଛନ୍ତି । ପ୍ରତି ଧାଡ଼ିରେ ୩ଜଣ ଲେଖାଏଁ ଛିଡ଼ା ହେଲେ, ୮ଟି ଧାଡ଼ିରେ କେତେ ଜଣ ପିଲା ଛିଡ଼ା ହୋଇଛନ୍ତି ?



୮ଟି ଧାଡ଼ିର ପିଲା ସଂଖ୍ୟା = ୩+୩+୩+୩+୩+୩+୩+୩
୧ଟି ଧାଡ଼ିର ପିଲା ସଂଖ୍ୟା =୩
୮ଟି ଧାଡ଼ିର ପିଲା ସଂଖ୍ୟା = ୩ x ୮=୨୪
୮ ଟି ଧାଡ଼ିର ପିଲା ସଂଖ୍ୟା ୨୪ଜଣ (ଉତ୍ତର)

୨୬.(କ) ତୁମ ବାଡ଼ିରେ ୭ଧାଡ଼ି ନଡ଼ିଆ ଗଛ ଅଛି । ପ୍ରତି ଧାଡ଼ିରେ ୫ଟି ନଡ଼ିଆଗଛ ଅଛି । ତୁମ ବଗିଚାରେ କେତୋଟି ନଡ଼ିଆ ଗଛ ଅଛି ?

୧ଟି ଧାଡ଼ିରେ ନଡ଼ିଆ ଗଛ ସଂଖ୍ୟା = [ ]
୭ଟି ଧାଡ଼ିରେ ନଡ଼ିଆ ଗଛ ସଂଖ୍ୟା =୫ x ୭= [ ]
ତୁମ ବଗିଚାରେ [ ] ଟି ନଡ଼ିଆ ଗଛ ଅଛି ।

(ଖ) ଗୋଟିଏ ଗାଈର ୪ଟି ଗୋଡ଼ । ତେବେ ୬ଟି ଗାଈର କେତୋଟି ଗୋଡ଼ ?

ଗୋଟିଏ ଗାଈର ଗୋଡ଼ ସଂଖ୍ୟା= [ ]
୬ଟି ଗାଈର ଗୋଡ଼ ସଂଖ୍ୟା = [ ] x [ ] = [ ]
୬ଟି ଗାଈର [ ] ଟି ଗୋଡ଼ ।

**କ'ଣ ଶିଖିବେ**

- ୧, ୨, ୩, ୪, ୫, ଓ ୧୦ କୁ ଗୁଣନୀୟକ ଭାବେ ନେଇ ଗୁଣନକୁ ଏକ ସଂଖ୍ୟାର ବାରମ୍ବାର ଯୋଗ ବୋଲି ବୁଝିବେ ।
- ଗୁଣନ ଚିହ୍ନ (X) କୁ ଚିହ୍ନିବେ ଓ ବ୍ୟବହାର କରିବେ ।
- ୧, ୨, ୩, ୪, ୫ ଏବଂ ୧୦ ର ଗୁଣନ ଖନ୍ଦାଗୁଡ଼ିକ ଲେଖିବେ ଏବଂ ମନେ ରଖିବେ ।
- ୧, ୨, ୩, ୪, ୫, ଏବଂ ୧୦ ର ଗୁଣନ ଖନ୍ଦା ଗୁଡ଼ିକ ବ୍ୟବହାର କରି ଦୈନନ୍ଦିନ ଜୀବନର ସମସ୍ୟାଗୁଡ଼ିକୁ ସମାଧାନ କରିବେ । (କୌଣସି ଉତ୍ପାଦକ ବା ଗୁଣନୀୟକ ୧୦ ରୁ ଅଧିକ ହେଉ ନଥିବ ।)

**ସୂଚନା**

- ଗୋଟିଏ ସଂଖ୍ୟାକୁ ବାରମ୍ବାର ଯୋଗ କରିବା କ୍ରିୟାକୁ ଗୁଣନ ପ୍ରକ୍ରିୟାରେ ପ୍ରକାଶ କରିବା ପାଇଁ 'କୁନା ନୂଆକଥା ଜାଣିଲା' ସଂଳାପର ସାହାଯ୍ୟ ନିଆଯାଇଛି ।
- ଗୁଣନକ୍ରିୟା କରିବା ସମୟରେ 'X' ଉକ୍ତ ଚିହ୍ନକୁ ବ୍ୟବହାର କରାଯାଏ ଓ ଏହାକୁ ଗୁଣନ ଚିହ୍ନ କୁହାଯାଏ ବୋଲି ଏଠାରେ ପ୍ରକାଶ କରାଯାଇଛି ।
- ୧, ୨, ୩, ୪, ୫ ଓ ୧୦ ର ଗୁଣନ ଖନ୍ଦା ଏଠାରେ ଦିଆଯାଇଛି ।

**ପ୍ରସ୍ତୁତି**

- ଦୁଇ ଦୁଇଟା, ତିନି ତିନିଟା, ଚାରି ଚାରିଟା ଜିନିଷର ପେଛା, ବିଡ଼ା, ପୁଡ଼ିଆ, ଡବା ଇତ୍ୟାଦି ଜିନିଷ ସଂଗ୍ରହ କରନ୍ତୁ ।
- ପତ୍ର, ଫୁଲ, ପାଖୁଡ଼ାରେ ମଧ୍ୟ ସେଟ୍ ତିଆରି କରିବା କୌଶଳକୁ ଅବଲମ୍ବନ କରନ୍ତୁ ।

**ଆମେ ଜାଣିବା**

- କୌଣସି ସଂଖ୍ୟାକୁ ଅଣଶୂନ ସଂଖ୍ୟା ସହ ଗୁଣନ କଲେ ଗୁଣନ ଫଳ ସେହି ସଂଖ୍ୟା ସହ ସମାନ ହେବ କିମ୍ବା ତା'ଠାରୁ ଅଧିକ ହେବ ।
- କୌଣସି ସଂଖ୍ୟାକୁ '୦' ଦ୍ୱାରା ଗୁଣନ କଲେ ଗୁଣନ ଫଳ '୦' ହେବ ।
- ୧ ଠାରୁ ୯ ପର୍ଯ୍ୟନ୍ତ ଗୁଣନ ଖନ୍ଦାକୁ ପ୍ରୟୋଗକରି ବଡ଼ ବଡ଼ ଗୁଣନ ଏବଂ ଏକାଧିକ ଅଙ୍କ ବିଶିଷ୍ଟ ସଂଖ୍ୟା ମାନଙ୍କର ଗୁଣନ ମଧ୍ୟ କରାଯାଏ ।

**ବାଜିଲେ ପାଇବ**

- ପିଲାଙ୍କୁ ଦୁଇ ଦଳରେ ଭାଗ କରାଯିବ ।
- ଦୁଇ ଦଳ ମଝିରେ ୩ଟି ଲେଖାଏଁ କାଚ ବାଟି/ ଗୋଡ଼ି ଥିବା ପୁଡ଼ିଆ ପିଲାଙ୍କ ସଂଖ୍ୟାକୁ ଦେଖି ରଖାଯିବ । ଯେପରି ପ୍ରତ୍ୟେକ ପିଲା ୪/୫ଟି ପୁଡ଼ିଆ ପାଇ ପାରିବେ ।
- ଦଳ ମଝିରେ ଗୋଟିଏ ଇଟା/ପଥର ଉପରେ ୧୦ ଖଣ୍ଡ ଖପରା ଉପରକୁ ଉପର ସଜ୍ଜା ହୋଇ ରହିବ ।
- ପାଳି ଅନୁସାରେ ଅଦଳ ବଦଳ କରି ପ୍ରତ୍ୟେକ ପିଲା ଏକ ନିର୍ଦ୍ଦିଷ୍ଟ ଦୂରତାରୁ ଖପରା ଉପରକୁ ବଲ ପକାଇବେ ।
- ଯାହାର ବଲ୍ ବାଜି ଇଟା ଉପରୁ ଯେତୋଟି ଖପରା ଇଟାତଳକୁ ପଡ଼ିବ ସେତିକି ପୁଡ଼ିଆ ଆଣି ନିଜ ପାଖରେ ରଖିବ ।
- ବଲଦ୍ୱାରା ଖପରା ତଳକୁ ନ ପଡ଼ିଲେ ପୁଡ଼ିଆ ଆଣି ପାରିବ ନାହିଁ ।
- ଏହି କ୍ରମରେ ସବୁ ପିଲା ଗୁଣନ ଖନ୍ଦା ପାଇଁ ଆବଶ୍ୟକ ପରିମାଣ ପୁଡ଼ିଆ ପାଇବା ପର୍ଯ୍ୟନ୍ତ ଖେଳ ଚାଲୁ ରହିବ ।

''ତିନି ତିନି ଛଅ''

ଦୁଇ ଦଳରେ ପିଲାମାନେ ମୁହାଁ ମୁହିଁ ହୋଇ ଠିଆ ହେବେ । ଦୁଇ ଦଳରୁ ଦୁଇ ଜଣ ନେତା ହେବେ । ନେତା କହିବେ ''ତିନି ତିନି ଛଅ- କେତେ ଖାଇବ କହ ?'' ତା'ପରେ ସେହି କଥା ସମସ୍ତେ ଠିକ୍ ସ୍ୱରରେ କହିବେ ।

- ଗୋଟିଏ ଦଳରେ ନେତା ଅନ୍ୟ ଦଳକୁ ଗୀତ ଛଳରେ ପଚାରିବ ୩ଟି ଲେଖାଏଁ ୧୫ଜଣ । ସେମାନେ ପାଞ୍ଚଜଣ କ୍ରମରେ କହିବେ ।

  ''ତିନି ତିନି ଛଅ'' ଛଅ ତିନି ନଅ, ନଅ ତିନି ବାର, ବାର ତିନି ପନ୍ଦର । ପ୍ରଶ୍ନ ପଚାରିବାର ସୀମା ହେଲା ୨/୩/୪/୫ ଟି ଲେଖାଏଁ ଓ ୧ରୁ ୧୦ ଜଣ ମଧ୍ୟରେ ରହିବ । ଏହିପରି ଅନ୍ୟ ଦଳ ପଚାରିବ ଓ ଖେଳ ଚାଲୁ ରହିବ ।

ଶିକ୍ଷକଙ୍କ କାର୍ଯ୍ୟ

- କୁନା ଓ ତା'ର ବାପାଙ୍କ ସହିତ ହୋଇଥିବା ସଂଳାପକୁ ନାଟକୀୟ ଢ଼ଙ୍ଗରେ ପିଲାଙ୍କ ପାଖରେ ଉପସ୍ଥାପନ କରନ୍ତୁ ।
- 'X' ଗୁଣନ ଚିହ୍ନକୁ ଚିହ୍ନାଇକୁ ।

  ନିମ୍ନ ଆଲୋଚନାକୁ କଳାପଟାରେ ଲେଖନ୍ତୁ ।

  ଦୁଇ ୧ଟି + ଦୁଇ ୧ଟି+ ଦୁଇ ୧ଟି + ଦୁଇ ୧ଟି + ଦୁଇ ୧ଟି ଅର୍ଥାତ

  ୨+୨+୨+୨+୨=୧୦

  ଦୁଇ ୫ଟି

  ୨X୫ଟି=୧୦
- ପିଲାମାନେ ଦୁଇଟି ଲେଖାଏଁ ଗୋଲି/ ଗୋଡ଼ି/ ପତ୍ର ୫ ଥର ନେଇ ମିଶାଇବେ

  ୨X୫=୧୦ ଲେଖିବେ

- ଖେଳ ଶେଷରେ ସବୁପିଲା ନିଜ ନିଜର ପୁଡ଼ିଆ ଗୋଟିଏ ଧାଡ଼ିରେ ସଜାଇ ରଖିବେ ।
- ପୁଡ଼ିଆ ମିଶାଇ ତାଙ୍କ ପାଖରେ କେତେ ପୁଡ଼ିଆ ଅଛି କହିବେ ।
- ଯିଏ ଯେତୋଟି ପୁଡ଼ିଆ ପାଇଥିବେ ସେତିକିଟି ୩ ଲେଖି ଖାତାରେ ମିଶାଇବେ ଓ ତାକୁ ଗୁଣନ କ୍ରିୟାକୁ ପରିବର୍ତ୍ତନ କରି ଲେଖିବେ । ଯେପରି-

  ୩+୩+୩+୩+୩+୩+୩ = ୨୧

ତିନି ୧ଟି+ ତିନି ୧ଟି +ତିନି ୧ଟି +ତିନି ୧ଟି +ତିନି ୧ଟି +ତିନି ୧ଟି +ତିନି ୧ଟି

ତିନି ୭ଟି

୩ X ୭= ୨୧

ପାଇଥିବା ପୁଡ଼ିଆ ସଂଖ୍ୟାକୁ ନେଇ ପିଲାମାନେ କ୍ରମରେ ଠିଆହେବେ । ଯଥା-

- ଗୋଟିଏ ପୁଡ଼ିଆ ପାଇଥିବା ପିଲା ଆଗରେ
- ୨ଟି ପୁଡ଼ିଆ ପାଇଥିବା ପିଲା ତା' ପରେ ରହିବ ।

  ଏହିପରି ସବୁପିଲା କ୍ରମରେ ରହିବା ପରେ ନିଜ ନିଜର ପୁଡ଼ିଆ ସଂଖ୍ୟାକୁ ନେଇ ୩ର ଗୁଣନ ଖନ୍ଦା କହିବେ ।
- ଏଥିରୁ ୩ର ଗୁଣନ ଖନ୍ଦା ଶିକ୍ଷକ କଳାପଟାରେ ଲେଖିବେ ।
- ଏହିପରି ଅନ୍ୟ ଗୁଣନ ଖନ୍ଦା ଲେଖା ଯାଇପାରେ ।

ଉପକରଣ

- କାଚ ବାଟି, ଗୋଡ଼ି, ମଞ୍ଜି ପୁଡ଼ିଆ, ଖପରା ଖଣ୍ଡ,ବଲ୍

- ଗୁଣନ ଖନ୍ଦା ଅଭ୍ୟାସ ପାଇଁ ଅଭ୍ୟାସ କାର୍ଯ୍ୟ କରିବେ ।
- ପିଲାମାନଙ୍କୁ ଗୋଲିକରି ଠିଆ କରାଇବେ । ଗୋଟିଏ ପିଲା ବଲ୍ ଧରି ଗୋଟିଏ ଗୁଣନ ଖନ୍ଦାର ପ୍ରଥମ ଘର କହି ଅନ୍ୟ ପିଲା ପାଖକୁ ବଲ୍ ପକାଇବ ।
- ଯାହା ପାଖରେ ବଲ୍ ପଡ଼ିବ ସେହି ପିଲା ସେହି ଗୁଣନ ଖନ୍ଦାର ପର ଘରଟି କହିବେ ।
- ଏହି କ୍ରମରେ ଗୁଣନ ଖନ୍ଦା ଶେଷ ପର୍ଯ୍ୟନ୍ତ ଚାଲିବ ।
  ପରବର୍ତ୍ତୀ ପର୍ଯ୍ୟାୟରେ ଗୋଟିଏ ପିଲା ଗୁଣନ ଖନ୍ଦାର କ୍ରମ ନରଖି ମନରୁ (ଯଥା- ପାଞ୍ଚ ସତାଁ କେତେ ? ଆଠ ପଞ୍ଚା କେତେ ?) ଇତ୍ୟାଦି ପ୍ରଶ୍ନ ପଚାରି ଯେଉଁ ପିଲା ପାଖକୁ ବଲ୍ ପକାଇବ ସେହି ପିଲା ଉତ୍ତର ଦେବ ।
- ଅନ୍ୟ ଜଣ ପାଖକୁ ବଲ୍ ପକାଇ ତା' ମନରୁ ଆଉ ଗୋଟିଏ ଗୁଣନ ଖନ୍ଦାରୁ ପଚାରିବ ।
- ଏହି କ୍ରମରେ ଖେଳ ଚାଲିବ ।

**ଚତୁର୍ଥ ଏକକ ପରୀକ୍ଷଣ**

**ପ୍ରକଳ୍ପ କାର୍ଯ୍ୟ**

୪+୪+୪+୪+୪+୪ = ୪X______

୨୦ = ୨X୧୦

= ୪X ______

= ୫X ______

- ୨X୧୦=୨୦
  ୩X୧୦=୩୦
  ୧୦X୧୦=______
  ୧୩X୧୦=______
  ୨୭X୧୦=______
- ୪ଟି ୫ ଓ ୩ଟି ୧୦ର ଯୋଗଫଳ କେତେ ?
- ୫ ର ୬ ଗୁଣ ୫ ର ୩ଗୁଣ ଠାରୁ କେତେ ବେଶି ?

ଗୁଣନ ଖନ୍ଦା କୋଠରି ପ୍ରସ୍ତୁତି

| X | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
|---|---|---|---|---|---|---|---|---|---|---|
| ୧ | ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨ | ୨ | ୪ | ୬ | ୮ | ୧୦ | ୧୨ | ୧୪ | ୧୬ | ୧୮ | ୨୦ |
| ୩ | ୩ | ୬ | ୯ | ୧୨ | ୧୫ | ୧୮ | ୨୧ | ୨୪ | ୨୭ | ୩୦ |
| ୪ | ୪ | ୮ | ୧୨ | ୧୬ | ୨୦ | ୨୪ | ୨୮ | ୩୨ | ୩୬ | ୪୦ |
| ୫ | ୫ | ୧୦ | ୧୫ | ୨୦ | ୨୫ | ୩୦ | ୩୫ | ୪୦ | ୪୫ | ୫୦ |
| ୬ | ୬ | ୧୨ | ୧୮ | ୨୪ | ୩୦ | ୩୬ | ୪୨ | ୪୮ | ୫୪ | ୬୦ |
| ୭ | ୭ | ୧୪ | ୨୧ | ୨୮ | ୩୫ | ୪୨ | ୪୯ | ୫୬ | ୬୩ | ୭୦ |
| ୮ | ୮ | ୧୬ | ୨୪ | ୩୨ | ୪୦ | ୪୮ | ୫୬ | ୬୪ | ୭୨ | ୮୦ |
| ୯ | ୯ | ୧୮ | ୨୭ | ୩୬ | ୪୫ | ୫୪ | ୬୩ | ୭୨ | ୮୧ | ୯୦ |
| ୧୦ | ୧୦ | ୨୦ | ୩୦ | ୪୦ | ୫୦ | ୬୦ | ୭୦ | ୮୦ | ୯୦ | ୧୦୦ |

# ରିଙ୍କୁ ଆଗ ମାପିଲା

ସମୟ - ୧୦ ପିରିୟଡ୍




କିଏ ଆଗ ମାପିବ ?

ରିଙ୍କୁ ମାପିଲା- [ ୪ ] ହାତ ।

ଟିକୁ ମାପିଲା- [   ] ଚାଖଣ୍ଡ ।

ଗୀତା - ଆମ ଘରଟି ବଡ଼ ।

ମିତା- ନା,ନା- ଆମ ଶ୍ରେଣୀ ଘରଟି ବଡ଼ ।

ଗୀତା- ଦେଖ୍ ମାପିଲୁ

ମିତା- ମାପିଲା ୧୫ହାତ
ନାଇଁଲୋ ତୁମ ଘର ଆମ ଘର ସମାନ ।

ଗୀତା- ଆମ ଘର ହେଲା ମୋ ପାଦରେ ୩୦ ପାଦ
ଚାଲ ତୁମ ଘର ମୋ ପାଦରେ ମାପିବା ।



୧୦୦ ବାଡ଼ି ହେଲେ ଜିତିବ

## ଅଭ୍ୟାସ

୧.



[   ] ଟି କଣ୍ଟାର ଲମ୍ବ ।

୨.



[   ] ଟି ଦିଆସିଲି କାଠିର ଲମ୍ବ ।

୩.



[   ] ଟି ଡଷ୍ଟରର ଲମ୍ବ ।

୪.



[   ] ହାତ ଉଚ୍ଚ ।

୫.

| | ମାପିବା ଆଗରୁ ଅନୁମାନ କରି ଲେଖ | | ମାପିବା ପରେ ଲେଖ | |
|---|---|---|---|---|
| | ହାତ | ଚାଖଣ୍ଡ | ହାତ | ଚାଖଣ୍ଡ |
| ଶ୍ରେଣୀ କୋଠରି ବାରଣ୍ଡାର ଓସାର | | | | |
| ଶ୍ରେଣୀ କୋଠରିର ଗୋଟିଏ ଖୁଣ୍ଟଠାରୁ ଅନ୍ୟ ଖୁଣ୍ଟର ଦୂରତା | | | | |
| ଦୁଆର ବନ୍ଧର ଲମ୍ବ | | | | |
| ଦୁଆର ବନ୍ଧର ଓସାର | | | | |
| ତୁମ ଘରେ ବା ବିଦ୍ୟାଳୟରେ ଥିବା କୂଅ ଦଉଡ଼ିର ଲମ୍ବ | | | | |

୬. ନିଜ ହାତରେ ଚାଖଣ୍ଡ ଓ ପାଦରେ ମାପି ଖାଲି ସ୍ଥାନ ପୂରଣ କର ।

| | ହାତ | ଚାଖଣ୍ଡ | ପାଦ |
|---|---|---|---|
| ଶ୍ରେଣୀ କୋଠରୀର ଲମ୍ବ | ୨୦ | ୪୦ | ୪୦ |
| ଶ୍ରେଣୀ କୋଠରୀର ଓସାର | | | |
| ଝରକା ବନ୍ଧର ଲମ୍ବ | | | |
| ଝରକା ବନ୍ଧର ଓସାର | | | |
| କଳାପଟାର ଲମ୍ବ | | | |
| କଳାପଟାର ଓସାର | | | |
| ଶିକ୍ଷକଙ୍କ ଟେବୁଲର ଲମ୍ବ | | | |

**କ'ଣ ଶିଖିବେ** ନିଜ ନିକଟ ପରିବେଶରେ ଥିବା ବସ୍ତୁ ତଥା ସ୍ଥାନ ଗୁଡ଼ିକର ଦୈର୍ଘ୍ୟ ମାପିବା ପାଇଁ ଅଣମାନକ ଏକକ ଯଥା- ହାତ, ମଣିଷ ପାଦ, ବାଡ଼ି ଇତ୍ୟାଦି ବ୍ୟବହାର କରିବେ ।

**ସୂଚନା**

- ''ରିଙ୍କୁ ଆଗ ମାପିଲା'' ଆଲୋଚନାର ବିଷୟ ବସ୍ତୁରେ ଅଣ ମାନକ ଏକକ ଯଥା ହାତ, ଚାଖଣ୍ଡ, ମଣିଷ ପାଦ ଓ ବାଡ଼ି ଆଦି ସାହାଯ୍ୟରେ ବସ୍ତୁ ତଥା ସ୍ଥାନରେ ଦୈର୍ଘ୍ୟ ମପା ଯାଇ ପାରିବ ବୋଲି କୁହାଯାଇଛି ।

**ପ୍ରସ୍ତୁତି**

- ''ହାତ ଚାଖଣ୍ଡେ'' ବିଷୟ ଉପରେ ଆଧାରିତ ଏକ ଗୀତ ଶିକ୍ଷକ ପିଲାମାନଙ୍କ ସହିତ ମିଶି ଗାଇବେ ।

ଗୀତ- ହାତେ ଚାଖଣ୍ଡେ ଖୋଳିବ ଗାତ
ପତର ଖଣ୍ଡିକେ ନ ଦେବ ହାତ
ଚାଖଣ୍ଡେ ଛାଡ଼ି ଭାଙ୍ଗିବ ଭଣ୍ଡା
ତେବେ ସେ ଦେଖିବ କଦଳୀ ପେଣ୍ଡା ।

**ଶିକ୍ଷକଙ୍କ କାର୍ଯ୍ୟ**

- ଶିକ୍ଷକ ପ୍ରଥମେ ପିଲାମାନଙ୍କୁ ଅର୍ଦ୍ଧବୃତ୍ତାକାରରେ ବସାଇ ଗପଟିକୁ କହନ୍ତୁ । ମଝିରେ ମଝିରେ ଗଳ୍ପ ସମ୍ପର୍କିତ ପ୍ରଶ୍ନ ପିଲାଙ୍କୁ ପଚାରନ୍ତୁ ।
- ଟିକୁ କିପରି ମାପିଲା ?
- ରିଙ୍କୁ କିପରି ମାପିଲା ?
- ଟିକୁ ଓ ରିଙ୍କୁ ମଧ୍ୟରୁ କିଏ ଆଗ ମାପିଲା ?
- ରିଙ୍କୁ କାହିଁକି ଆଗ ମାପି ପାରିଲା ?
- ପାଠ୍ୟ ପୁସ୍ତକରେ ପ୍ରଦତ୍ତ କାର୍ଯ୍ୟାବଳୀରେ ଦିଆଯାଇଥିବା ପ୍ରଶ୍ନ ଗୁଡ଼ିକୁ ସମାଧାନ କରି ଖାଲି ସ୍ଥାନରେ ଉତ୍ତର ଲେଖିବେ ।

**ଆମେ ଜାଣିବା**

- ଅଣମାନକ ଏକକର ନିର୍ଦ୍ଦିଷ୍ଟ ମାନ ନଥାଏ ।
- ମାନକ ଏକକର (ଯଥା- ଏକ ମିଟର, ଫୁଟ, ଗଜ)ର ମାନ ଥାଏ ।

**କାର୍ଯ୍ୟ**

ନିଜେ ମାପି ଦେଖ

- ଶିକ୍ଷକ ପିଲାମାନଙ୍କୁ ସେମାନଙ୍କର ହାତ ଓ ଚାଖଣ୍ଡ ମାପି କେତେ ହାତ କେତେ ଚାଖଣ୍ଡ ହେଲା ନିଜ ଖାତାରେ ଲେଖିବେ ଓ କହିବେ ।
- ଶ୍ରେଣୀ କୋଠରିରେ ଥିବା ବିଭିନ୍ନ ବସ୍ତୁ ଓ ଖେଳ ପଡ଼ିଆକୁ ହାତ ଓ ବାଡ଼ି ସାହାଯ୍ୟରେ ମାପିବ ପାଇଁ କହିବେ ।

କାଠି- ପୁଆ ଖେଳ

- ପିଲାଙ୍କୁ ଦୁଇ ଦଳରେ ବିଭକ୍ତ କରାଯାଇ ପୁଆ ବାଡ଼ି ଖେଳ କରାଯିବ । ପ୍ରଥମେ ଗୋଟିଏ ଦଳ ପୁଆକୁ ବାଡ଼ିରେ ବାଡ଼େଇ ଦୂରକୁ ପକାଇବେ ଓ ଅନୁମାନ କରି ବାଡ଼େଇ ଥିବା ସ୍ଥାନରୁ ପୁଆ ପଡ଼ିଥିବା ସ୍ଥାନର ଦୂରତା କେତେ ବାଡ଼ି ହେବ ତାହା ଅନୁମାନ କରି କହିବେ ଓ ତା'ପରେ ବାଡ଼ିରେ ମାପି ସତ୍ୟାସତ୍ୟ ପରୀକ୍ଷା କରିବେ ।କଥା ମାପିବା ପରେ ଠିକ୍ ହୁଏ ତେବେ ମପା ଯାଇଥିବା ବାଡ଼ି ସଂଖ୍ୟା ସହିତ ୧୦ (ଦଶ) ଯୋଗ କରାଯିବ । ଏହିପରି ଦୁଇଦଳ ଅଦଳ ବଦଳ କରି ଖେଳିବେ । ପାଦ ଓ ବାଡ଼ି ଅଣମାନକ ବ୍ୟବହାର କରି ଦଉଡ଼ି, ଲୁଗା ଓ ଅନ୍ୟାନ୍ୟ ବସ୍ତୁ, ସ୍ଥାନର ଦୈର୍ଘ୍ୟ ମାପିବେ ।

**ଶ୍ରେଣୀ କକ୍ଷର ଦୈର୍ଘ୍ୟ, ଓ ପ୍ରସ୍ଥ ମାପ**

ପ୍ରତ୍ୟେକ ପିଲା ଶ୍ରେଣୀ କକ୍ଷର ଦୈର୍ଘ୍ୟ ଓ ପ୍ରସ୍ଥକୁ ଅଣମାନକ ଏକକରେ ମାପି ଦେଖିବେ କିଏ ବଡ଼ । (ପାଦରେ, ହାତରେ ଓ ବାଡ଼ିରେ ମାପିବେ ।)

প্রকল্প কার্য্য

ପିଲାମାନେ ସେମାନଙ୍କ ସାହି ପଡ଼ିଶା ଓ ଘରେ କେଉଁ କେଉଁ ଅଣ ମାନକ ଏକକ ବ୍ୟବହାର କରନ୍ତି ତାହାର ଏକ ତାଲିକା କରିବେ ।

ଉପକରଣ — ବିଭିନ୍ନ ଲମ୍ବର ବାଡ଼ି (ଯଥା-ଏକ ହାତ, ଦୁଇହାତ, ଏକ ଚାଖଣ୍ଡ) ଦଉଡ଼ି, ସୁତୁଲି

## ପଞ୍ଚମ ଏକକ ପରୀକ୍ଷଣ

# କାହା ପାଇଁ କେତେ

ସମୟ - ୧୦ ପିରିୟଡ୍



ମାଆ – ମିତା ! କ୍ଷୀର ନେଇ ଆସିଲୁ ?

ମିତା – ହଁ ମା' ।

ମାଆ- ''ବାଲ୍‌ଟିରୁ କ୍ଷୀର ଢ଼ାଳି ଡେକ୍‌ଚିରେ ପୂରା- ମୁଁ ଗରମ କରିବି ।''



ମାଆ- ଗରମ କ୍ଷୀରରୁ ଦି ଡାଟିଆ ବାପାଙ୍କ ପାଇଁ ରଖିଦେ ।
ବୋତଲରେ ବୋତଲେ ମାମା ପାଇଁ ରଖିଦେ ।

# ଅଭ୍ୟାସ

କେତୋଟି ବଡ଼ ପାତ୍ର ଓ ଛୋଟ ପାତ୍ରର ଛବି ଦିଆଯାଇଛି । ଏହିପରି ଛୋଟ ପାତ୍ରରେ ପାଣି ମାପି ବଡ଼ ପାତ୍ରରେ ପୂରାଅ ଓ ସାନ ପାତ୍ରରେ କେତେ ଥର ପାଣି ବଡ଼ ପାତ୍ରରେ ପଶିଲା ଲେଖ ।

| ପାତ୍ରର ଛବି | ବଡ଼ ପାତ୍ରରେ ଧରେ |
|---|---|
| | ☐ ମଗ୍ |
| | ☐ ଲୋଟା |
| | ☐ ଗ୍ଲାସ୍ |
| | ☐ ଡାଟିଆ |

କ'ଣ ଶିଖିବେ

- କପ୍, ଗ୍ଲାସ ଓ ବୋତଲ ଭଳି ଅଣମାନକ ଏକକ ସାହାଯ୍ୟରେ ଧାରକତ୍ୱ ମାପିବେ ।

ସୂଚନା

- ''କାହା ପାଇଁ କେତେ'' ଜାଣିବା ପାଇଁ ହୋଇଥିବା ଆଲୋଚନାରେ କପ୍, ଗ୍ଲାସ, ବୋତଲ ଭଳି ଅଣମାନକ ଏକକ ସାହାଯ୍ୟରେ ଧାରକତ୍ୱ ମାପିବାର ଧାରଣା ଦିଆଯାଇଛି ।

ପ୍ରସ୍ତୁତି କାର୍ଯ୍ୟ

- ଶିକ୍ଷକ ପିଲାମାନଙ୍କୁ ''କାହା ପାଇଁ କେତେ''ରେ ଦିଆଯାଇଥିବା ଚିତ୍ର ଦେଖାନ୍ତୁ । ଏହାପରେ ଝିଅଟି କେଉଁଥିରେ କ୍ଷୀର ଅଣିଥିଲା ପଚାରନ୍ତୁ ।
- କାର୍ଯ୍ୟାବଳୀରେ ପ୍ରଦତ୍ତ ପ୍ରଶ୍ନ ଗୁଡ଼ିକର ସମାଧାନ କରି ଖାଲି ସ୍ଥାନରେ ଉତ୍ତର ଲେଖନ୍ତୁ ।

ଆମେ ଜାଣିବା

- କପ୍, ଗ୍ଲାସ, ବୋତଲ ଆଦି ଅଣମାନକ ଏକକ, କିନ୍ତୁ ଲିଟର ମାନକ ଏକକ ।

କାର୍ଯ୍ୟ

- ଶିକ୍ଷକ ପିଲାମାନଙ୍କୁ ଦଳଗଠନ କରାଇବେ । ପ୍ରତି ଦଳକୁ ଏକ ପାଣି ଡେକଚି ଦେଇ ଗୋଟିଏ ବାଲଟିରେ କେତେ ମଗ୍ , କେତେ ବୋତଲ, କେତେ ଗ୍ଲାସ ବା କେତେ କଂସା ପାଣି ଧରୁଛି ତାହା ପରୀକ୍ଷା କରି ନିଜ ଖାତାରେ ଲେଖିବା ପାଇଁ କହିବେ । ବାଲ୍‌ଟିର ପାଣି କେଉଁଥିରେ ଶୀଘ୍ର ପୂର୍ଣ୍ଣ ହେଲା, ସେହି ଜିନିଷର ନାମ ଲେଖିବେ ଓ କେଉଁଥିରେ ଡେରିରେ ପୂର୍ଣ୍ଣ ହେଲା ସେହି ଜିନିଷର ନାମ ଲେଖିବେ ।
- ଗୋଟିଏ ବାଲ୍‌ଟିରେ ବା ଡେକଚିରେ କେତେ ମଗ୍ ପାଣି ଧରିବ, ପ୍ରଥମେ ଅନୁମାନ କରି କହିବେ ଓ ପରେ ମଗ୍ ଦ୍ୱାରା ବାଲଟି ବା ଡେକ୍‌ଚିରେ କେତେ ମଗ୍ ପାଣି ଧରିଲା ପରୀକ୍ଷା କରି ସେମାନଙ୍କର ଅନୁମାନ ଭୁଲ୍ କିମ୍ବା ଠିକ୍ ଜାଣିବେ ।
- ଗୋଟିଏ ବାଲ୍‌ଟି, ଗୋଟିଏ ହାଣ୍ଡି ମଧ୍ୟରୁ କେଉଁଥିରେ ଅଧିକ ପାଣି ରହେ, ଅନୁମାନ କରି କହିବେ । ପ୍ରଥମ ଅଧିକ ପାଣି ରହେ, ଅନୁମାନ କରି କହିବେ । ପ୍ରଥମ ଦଳ ପିଲା ମଗ୍ ସାହାଯ୍ୟରେ ଗଣନା କରି ପାଣି ପକାଇବେ । ଆନୁମାନିକ ସିଦ୍ଧାନ୍ତର ସତ୍ୟତା ପରୀକ୍ଷା କରିବେ ।
- ଅନ୍ୟ ଦଳ ଡାଳ ସାହାଯ୍ୟରେ ପୂରାଇ ସତ୍ୟତା ପରୀକ୍ଷା କରିବେ ।

ଉପକରଣ

ବାଲ୍‌ଟି, ଡେକ୍‌ଚି, ତାଟିଆ, କଂସା, ଗ୍ଲାସ୍, ମଗ୍, ବୋତଲ୍

# ଗୋପାଳ ଦୋକାନୀ ହେଲା

ସମୟ - ୧୦ ପିରିୟଡ୍

ମଧୁ- ''ସୀତା! ଗୋପାଳ! ମୁଁ କାଲି ବାପାଙ୍କ ସାଙ୍ଗରେ ହାଟକୁ ଯାଇଥିଲି । ହାଟରୁ ଆଳୁ, ବାଇଗଣ, ପିଆଜ, ରସୁଣ କିଣି ଆଣିଲୁ । ଦୋକାନୀ ଆମକୁ ଜିନିଷ ଓଜନ କରି ଦେଲା ।''

ସୀତା- ''ଆମେ ଓଜନ ଖେଳ ଖେଳିବା ।''

ଗୋପାଳ-''ମୁଁ ଦୋକାନୀ ହେଉଛି । ତୁମେ ମାଟି, ବାଲି, ଗୋଲି, ତେନ୍ତୁଳି ମଞ୍ଜି ଆଣ । ମୋର ଗୋଟିଏ ତରାଜୁ ଅଛି, ସେଥିରେ ଓଜନ କରି ଦୋକାନର କିଣା ବିକା ପରି ଖେଳିବା ।''



## ଅଭ୍ୟାସ

୧.ଗୋଡ଼ି ପଥର ସହିତ ତଳେ ଦିଆଯାଇଥିବା ଜିନିଷ ଗୁଡ଼ିକ ଓଜନ କରି ଜିନିଷ ମାନଙ୍କର ଓଜନ କେତୋଟି ଗୋଡ଼ି ହେଲା ଲେଖ ।

| ଜିନିଷର ନାମ | ଜିନିଷର ଓଜନ |
|---|---|
| | |
| | |
| | |
| | |
| | |
| | |
| | |
| | |

**କ'ଣ ଶିଖିବେ**

- ପଥର ଖଣ୍ଡ ଓ ଗୋଲି ପରି ଅଣମାନକ ଏକକ ନେଇ ଖେଳଣା ତରାଜୁ ସାହାଯ୍ୟରେ ନିକଟ ପରିବେଶର ବସ୍ତୁମାନଙ୍କର ବସ୍ତୁତ୍ୱ ବା ଓଜନ ନିର୍ଣ୍ଣୟ କରିବେ ।

**ସୂଚନା**

- ''ଗୋପାଳ ଦୋକାନୀ ହେଲା'' ଆଲୋଚନାର ବିଷୟ ବସ୍ତୁରେ ଖେଳଣା ତରାଜୁ ସାହାଯ୍ୟରେ ପଥର ଖଣ୍ଡ ଓ ଗୋଲି ଭଳି ବସ୍ତୁର ବସ୍ତୁତ୍ୱ ବା ଓଜନ ନିର୍ଣ୍ଣୟ କରାଯାଇଛି ।

**ପ୍ରସ୍ତୁତି**

- ପିଲାମାନେ ଗୋଲହୋଇ ଠିଆହେବେ । ଜଣେ ମଝିରେ ରହି ଖେଳ ପରିଚାଳନା କରିବ ।.........................................................

ଉପର ତଳ

ଅନ୍ୟ ପିଲାମାନେ ପାଳି ଧରିବେ । ଏହି ଭଳି ଖେଳ ପରିଚାଳନା କରୁଥିବା ପିଲା ଯାହା ପାଖରେ ଠିଆହୋଇ - କୁହ ଭାଇ ''କିଏ ଉପରକୁ କିଏ ତଳକୁ'' କହିବ ଉଦାହରଣ ସ୍ୱରୂପ ପିଲାଟି କହିବ- ''ମୂଷା ଉପରକୁ ହାତୀ ତଳକୁ । ଭାରି ତଳକୁ, ଭାରି ତଳକୁ'' ଏହିପରି ଖେଳ ପରିଚାଳନା କରୁଥିବା ପିଲାଟି ଯାହା ପାଖରେ ପହଞ୍ଚିବ ସେ ପ୍ରଶ୍ନାନୁସାରେ ଗୋଟିଏ ହାଲ୍‌କା ଓ ଗୋଟିଏ ଓଜନିଆ ଜିନିଷ କହି ଉତ୍ତର ଦେବ । ଉତ୍ତର ଦେଇ ନ ପାରିଲେ ମଝିକୁ ଆସି ଖେଳ ପରିଚାଳନା କରିବ । କୌଣସି ଉତ୍ତର ପୁନରାବୃତ୍ତି ହେବନାହିଁ ।

**କାର୍ଯ୍ୟ**

- 'ଗୋପାଳ ଦୋକାନୀ ହେଲା'ର ବିଷୟବସ୍ତୁ ଶିକ୍ଷକ ''କଥୋପକଥନ'' ମାଧ୍ୟମରେ ଉପସ୍ଥାପନ କରନ୍ତୁ । ମଝିରେ ମଝିରେ ବିଷୟ ବସ୍ତୁ ସମ୍ପର୍କିତ ପ୍ରଶ୍ନ ପିଲାମାନଙ୍କୁ ପଚାରି ବିଭିନ୍ନ ବିସ୍ତୁର ବସ୍ତୁତ୍ୱ ବା ଓଜନ ସମ୍ପର୍କରେ ଧାରଣା

**ଆମେ ଜାଣିବା**

- ପଥରଖଣ୍ଡ କିଲୋଗ୍ରାମ୍ ପରି ମାନକ ଓଜନ ମାପକ ନୁହେଁ । ଏହା ଅଣମାନକ ଓଜନ ମାପକ ଅଟେ ।

**କାର୍ଯ୍ୟ**

- ଶିକ୍ଷକ ପିଲାମାନଙ୍କୁ ଖେଳଣା ତରାଜୁ ସାହାଯ୍ୟରେ ବାଲି, ଗୋଡ଼ି, ପଥରଖଣ୍ଡ ଓଜନ କରାଇ ବସ୍ତୁମାନଙ୍କର ବସ୍ତୁତ୍ୱ ସଂପର୍କରେ ଧାରଣା ଦେବା ପାଇଁ ସୁଯୋଗ ସୃଷ୍ଟି କରନ୍ତୁ । ପିଲାମାନେ ଦଳ ଦଳ ହୋଇ ବସି ଖେଳଣା ତରାଜୁ ସାହାଯ୍ୟରେ ପଥରଖଣ୍ଡ ସହିତ ଗୋଡ଼ି ଓଜନ କରି କେତୋଟି ପଥର ଖଣ୍ଡ ସହିତ କେତୋଟି ଗୋଡ଼ି ସମାନ ହେଲା ଗଣି ହିସାବ କରିବେ ।
- ପିଲାଙ୍କୁ ଦଳ ଦଳ କରି ବସାଯିବ । ଗୋଟିଏ ଦଳ ଖଣ୍ଡିଏ ପଥର ଅନ୍ୟ ଦଳକୁ ଦେଖାଇ ପଚାରିବେ - ଏଇ ପଥର ଖଣ୍ଡର ଓଜନ ସହିତ କେତୋଟି ତେନ୍ତୁଳି ମଞ୍ଜି ସମାନ ହେବ ? ଅନ୍ୟଦଳ ଅନୁମାନ କରି କହିବେ ? ଏହାପରେ ପଥର ଖଣ୍ଡର ଓଜନ ସହିତ ତେନ୍ତୁଳି ମଞ୍ଜିକୁ ଓଜନ କରିବେ । ଓଜନ ପରେ ମିଳିଥିବା ତେନ୍ତୁଳି ମଞ୍ଜିର ସଂଖ୍ୟା ଅନୁମାନ କରି କହିଥିବା ତେନ୍ତୁଳି ମଞ୍ଜିର ସଂଖ୍ୟା ସହିତ ସମାନ ହେଲେ ଦ୍ୱିତୀୟ ଦଳ ୧ ନମ୍ବର ପାଇବେ । ଏହାକୁ ଅଦଳ ବଦଳ କରି ଖେଳାଯିବ ।

**ଓଜନ କରି କହ**

ପିଲାମାନଙ୍କୁ ଦଳ ଦଳ କରି ବସାଯାଇ ପ୍ରତ୍ୟେକ ଦଳକୁ ଖେଳଣା ତରାଜୁ ଦିଆଯିବ ।

ପ୍ରତ୍ୟେକ ଦଳ ପରିବେଶରୁ ସଂଗ୍ରହ କରିଥିବା ଆଳୁ, ପିଆଜ, ଅଦା, ବାଇଗଣ, ସାରୁ , ହଳଦୀଖଣ୍ଡ ଇତ୍ୟାଦି ପନି ପରିବା ଆଣିବେ ।

ସୃଷ୍ଟି କରାନ୍ତୁ । ପିଲାମାନଙ୍କ ସହ ଆଲୋଚନା ସମୟରେ ନିମ୍ନଲିଖିତ ପ୍ରଶ୍ନ ଗୁଡ଼ିକ ପଚାରନ୍ତୁ ।

- ହାଟରୁ ଆମେ କି' କି ଜିନିଷ ପାଉ ?
- ଦୋକାନୀ କାହା ସାହାଯ୍ୟରେ ଓଜନ କରେ ?
- ଆଳୁ ଓ ବାଇଗଣ ମଧ୍ୟରେ କିଏ ଅଧିକ ଓଜନିଆ ?
- ମଞ୍ଜି ଓ ବାଲି ମଧ୍ୟରେ କିଏ ବେଶୀ ଓଜନିଆ ?

ଆଲୋଚନା ବେଳେ ଆଳୁ, ବାଇଗଣ, ରସୁଣ, ପିଆଜ ପ୍ରଭୃତି ପିଲାଙ୍କୁ ଦେଇ ସେମାନଙ୍କ ମଧ୍ୟରେ କିଏ ବେଶୀ ଓଜନିଆ ଅନୁମାନ କରି କହିବା ପାଇଁ ଶିକ୍ଷକ ପିଲାମାନଙ୍କୁ କହିବେ ।

- ପାଠ୍ୟ ପୁସ୍ତକରେ ପ୍ରଦତ୍ତ କାର୍ଯ୍ୟାବଳୀର ପ୍ରଶ୍ନ ଗୁଡ଼ିକ ସମାଧାନ କରି ଖାଲି ସ୍ଥାନରେ ଉତ୍ତର ଗୁଡ଼ିକ ଲେଖିବେ ।

ଉପକରଣ

- ଖେଳଣା, ତରାଜୁ, ପଥରଖଣ୍ଡ, ଇଟାଖଣ୍ଡ,ବାଲି, ଆଳୁ, ପିଆଜ, ବାଇଗଣ, ରସୁଣ, ଅଦା

ଗୋଟିଏ ଆଳୁ ସହିତ କେତୋଟି ପିଆଜ, ଖଣ୍ଡେ ଅଦା ସହିତ କେତେଖଣ୍ଡ ହଳଦୀ, ଗୋଟିଏ ବାଇଗଣ ସହିତ କେତେ ସାରୁ ସମାନ ପିଲାମାନେ ଓଜନ କରି ନିଜ ନିଜ ଖାତାରେ ଲେଖିବେ ।

ଉପକରଣ- ବାଲି, ଗୋଡ଼ି, ପଥରଖଣ୍ଡ, ତେନ୍ତୁଳିମଞ୍ଜି, ତରାଜୁ, ଆଳୁ, ପିଆଜ, ଅଦା, ବାଇଗଣ, ସାରୁ, ହଳଦୀଗୁଣ୍ଡ ।

ପ୍ରକଳ୍ପ କାର୍ଯ୍ୟ

ପିଲମାନଙ୍କୁ ନିଜ ନିଜ ଖାତାରେ ତରାଜୁ ଚିତ୍ର ଅଙ୍କନ କରି ଗୋଟିଏ ପଲାରେ ଅମୃତଭଣ୍ଡା ଓ ଅନ୍ୟ ପଲାରେ ପିଜୁଳି ଚିତ୍ର ଅଙ୍କନ କରି ଆଣିବା ପାଇଁ କୁହାଯିବ ।

ନିଜ ତରାଜୁ ନିଜେ ବନେଇବା

ଉପକରଣ

ଲିମ୍‌କା ଠିପି, ମୋଟା ସୂତା, ବାଉଁଶ କାଠି, ଡବା ଠିପି ବା ନଡ଼ିଆର ସଢ଼େଇ ନେଇ ପିଲାମାନେ ତରାଜୁ ବନେଇବେ । ସାବୁନ୍, ଟୁଥ୍‌ପେଷ୍ଟ ପ୍ରଭୃତିର ସମାନ ଓଜନ ବିଶିଷ୍ଟ ଗୋଡ଼, ପଥର ନେଇ ତାକୁ ନିର୍ଦ୍ଦିଷ୍ଟ ଓଜନ୍ ମାପକ ରୂପେ ବ୍ୟବହାର କରିବେ ।

# "ଚକା ଚକା ଭଉଁରୀ"

ସମୟ - ୧୦ ପିରିୟଡ୍

ଟିକି- ବାପା! ଆମେ କେଉଁଦିନ ପୁରୀ ବୁଲି ଯିବା ?

ବାପା- ଆମେ ଆସନ୍ତା ଶନିବାର ଦିନ ଯିବା ।

ଟିକି- ଆଜି କି ବାର କି ?

ବାପା- ଆଜି ରବିବାର ।

ଟିକି- ତା ପରେ,

ବାପା- ସୋମବାର ।

ଟିକି - ବାପା ଏକା ଥରକେ କହନ୍ତୁ ?

ବାପା- ହଉ ଶୁଣ, ସପ୍ତାହକ ସାତ ଦିନ । ସେଗୁଡ଼ିକର ନାମ ହେଲା ରବିବାର, ସୋମବାର, ମଙ୍ଗଳବାର, ବୁଧବାର, ଗୁରୁବାର, ଶୁକ୍ରବାର ଓ ଶନିବାର । ଯେ କୌଣସି ବାରରୁ ଆରମ୍ଭ କରି ୭ଦିନ ଗଣିଲେ ଏହି ୭ ଦିନକୁ ଏକ ସପ୍ତାହ କୁହାଯାଏ ।




(ଜଣେ ମାସ ରାଜାଙ୍କ ପରେ ଅନ୍ୟ ଜଣେ ମାସ ରାଜା ନିଜ ନିଜ କଥା କହିବେ ।)

ଜାନୁଆରୀ- ମୁଁ ପ୍ରଥମ ମାସ । ହା...ହା... ବାର ମାସ ମଧ୍ୟରେ ମୁଁ ସର୍ବପ୍ରଥମେ ପୃଥିବୀକୁ ଆସେ । ନାମ ମୋର ଜାନୁଆରୀ । ୩୧ ଦିନ ଧରି ମୁଁ ରହେ । ମୁଁ ପ୍ରଥମ ମାସ । ମୁଁ ଆସିଲେ ତୁମେ ନୂଆ ବର୍ଷ ପାଳନ କର ।

ଫେବୃଆରୀ- ନାମ ମୋର ଫେବୃଆରୀ । ଜାନୁଆରୀ ଫେରିଯିବା ପରେ ମୁଁ ପୃଥିବୀକୁ ଆସେ । ଏଣୁ ମୁଁ ୨ୟ ମାସ । ୨୮ ଦିନ ପାଇଁ ରହେ । ହାଃ...ହାଃ... କିନ୍ତୁ ଗୋଟେ ମଜା କଥା,୪ବର୍ଷରେ ଥରେ ମୁଁ ୨୯ ଦିନ ହୁଏ । ମୋର ଆୟୁଷ ୧ ଦିନ ବଢ଼ିଯାଏ ।

ମାର୍ଚ୍ଚ- ଫେବୃଆରୀ ପରେ ମୁଁ ଆସେ । ତୃତୀୟ ମାସ ରୂପେ ଆସି ୩୧ ଦିନ ପାଇଁ ରହେ । ଖରାର ତେଜ ବଢ଼ାଇ ମୁଁ ପୁଣି ଫେରି ଯାଏ ।

ଏପ୍ରିଲ- ଟାଣ ଖରାକୁ ସାଥୀ କରି ମୁଁ ତୁମ ପାଖକୁ ଆସେ । ମାର୍ଚ୍ଚ ପରେ ମୁଁ ଚତୁର୍ଥ ମାସ । ମୁଁ ୩୦ ଦିନ ପାଇଁ ରହେ ଓ ମେ ମାସ ଆସିବାର ପୂର୍ବ ଦିନ ମୁଁ ଫେରିଯାଏ ।

ମେ- ମୁଁ ଆସିଲେ ନଈ ନାଳ ଶୁଖି ଠୋ ଠୋ । ଝାଞ୍ଜି ବହେ, ଖରା ବଢ଼େ । ମୁଁ ମେ' । ଏପ୍ରିଲ ଠାରୁ ଅଧିକ ଗୋଟିଏ ଦିନ ରହି ଲୋକଙ୍କୁ ଗରମରେ ଛଟ ପଟ କରି ଫେରିଯାଏ । ମୁଁ ପଞ୍ଚମ ମାସ ।

ଜୁନ୍- ତୁମମାନଙ୍କ ପାଇଁ ରଜ ପର୍ବ ସାଙ୍ଗରେ ନେଇ ମୁଁ ଆସେ । ୩୦ ଦିନ ପାଇଁ ମୁଁ ରହେ । ମେଘ ପବନକୁ ପଠାଇ ଦେଇ ମୁଁ ପୁଣି ଫେରିଯାଏ । ମୁଁ ଷଷ୍ଠ ମାସ ।

ଜୁଲାଇ- ଝିପି ଝିପି ବର୍ଷା, ଚିକି ମିକି ବିଜୁଳି, ଘଡ଼ ଘଡ଼ି ଶବଦ କରି ମୁଁ ତୁମ ପାଖକୁ ଆସେ । ମୁଁ ଜୁଲାଇ,୭ମ ପାଳିରେ ଆସି ୩୧ଦିନ ଧରି ରହେ । ଶୁଖିଲା ମାଟିକୁ ପାଣି ଦେଇ ଓଦା କରେ । ଗଛଲତା ଓ ଜୀବଜନ୍ତୁଙ୍କୁ ଆନନ୍ଦ ଦେଇ ମୁଁ ଫେରିଯାଏ ।

ଅଗଷ୍ଟ- ଜୁଲାଇର ମୁଁ ଜାଆଁଳା ଭାଇ । ନାମ ମୋର ଅଗଷ୍ଟ । ତାଙ୍କ ପରି ମୁଁ ମଧ୍ୟ ୩୧ ଦିନ ଧରି ରହେ । ଝିପିଝିପି ବର୍ଷା କରାଇ ଧାନ ଗଛକୁ ବଢ଼ାଏ । ତାପରେ ମୁଁ ବିଦାୟ ନିଏ ।

ସେପ୍ଟେମ୍ବର- ଗୁରୁ ଦିବସକୁ ନେଇ ମୁଁ ଆସେ । ୩୦ ଦିନ ରହି ଆକାଶକୁ ନିର୍ମଳ ରଖେ । ମୁଁ ୯ ନମ୍ବର ମାସ ମୋ ପରେ ଅକ୍ଟୋବର ଆସେ ।

ଅକ୍ଟୋବର- ମୁଁ ଅକ୍ଟୋବର । ଦେବୀଙ୍କର ପୂଜା ଦଶହରା ପର୍ବ ନେଇ ମୁଁ ଆସେ । ତୁମ ମାନଙ୍କୁ ନୂଆ ପୋଷାକରେ ସଜେଇ ଦିଏ । ୧୦ମ ପାଳିରେ ଆସି ୩୧ ଦିନ ଧରି ରହେ । ନଭେମ୍ବର ଆସିବାର ଗୋଟିଏ ଦିନ ଆଗରୁ ମୁଁ ଫେରେ ।

ନଭେମ୍ବର- ଘାସ ଗଛରେ କାକର ପକାଇ ମୁଁ ଆସେ । ମୁଁ ୧୧ ନମ୍ବର ମାସ । ୩୦ ଦିନ ପାଇଁ ରହେ । ଡିସେମ୍ବରକୁ ବାଟ ଦେଖାଇ ମୁଁ ଫେରେ ।

ଡିସେମ୍ବର- ମୁଁ ବର୍ଷର ଶେଷ ମାସ । ମୋତେ ୩୧ ଦିନ ପୂରିଲେ ବର୍ଷ ଶେଷ ହୁଏ । ମୋ ପରି ଆଉ ଯେତେ ୩୧ ଦିନ ରହନ୍ତି ସେମାନେ ୪ ସପ୍ତାହ ୩ଦିନରେ ତିଆରି ହୁଅନ୍ତି । ମୁଁ ଫେରିଲେ ନୂଆ ବର୍ଷ ଆସେ । ଗୋଟିଏ ନୂଆବର୍ଷ ଆରମ୍ଭ ହୁଏ ।

## ଅଭ୍ୟାସ

୧. ମାସର ନାମ ପାଖରେ ତା'ର କ୍ରମିକ ନମ୍ବର ଲେଖ, ଯେପରି-

| | |
|---|---|
| ଜୁଲାଇ | ଅଗଷ୍ଟ |
| ମେ | ଜୁନ୍ |
| ମାର୍ଚ୍ଚ | ଏପ୍ରିଲ |
| ଜାନୁଆରୀ ୧ | ଫେବୃଆରୀ ୨ |
| ଅକ୍ଟୋବର | ସେପ୍ଟେମ୍ବର |
| ଡିସେମ୍ବର | ନଭେମ୍ବର |

୨. ଖାଲି ଘରେ ବାରଗୁଡ଼ିକର ନାମ କ୍ରମାନୁସାରେ ଲେଖ, ଯେପରି-




୩. ମାସ ଗୁଡ଼ିକର ନାମ ପଛକୁ ପଛ ଖାଲି ସ୍ଥାନରେ ସଜାଇ ଲେଖ ଓ ସେଗୁଡ଼ିକର ଦିନ ସଂଖ୍ୟା ଲେଖ ।




| | | |
|---|---|---|
| ୧ | ଜାନୁଆରୀ | ୩୧ ଦିନ |
| ୨ | | ☐ ଦିନ |
| ୩ | | ☐ ଦିନ |
| ୪ | | ☐ ଦିନ |
| ୫ | | ☐ ଦିନ |
| ୬ | | ☐ ଦିନ |
| ୭ | | ☐ ଦିନ |
| ୮ | | ☐ ଦିନ |
| ୯ | | ☐ ଦିନ |
| ୧୦ | | ☐ ଦିନ |
| ୧୧ | | ☐ ଦିନ |
| ୧୨ | | ☐ ଦିନ |

କ'ଣ ଶିଖିବେ

- ଦିନ ଓ ସପ୍ତାହ ମଧ୍ୟରେ, ସପ୍ତାହ ଓ ମାସ ମଧ୍ୟରେ ଏବଂ ମାସ ଓ ବର୍ଷ ମଧ୍ୟରେ ସମ୍ପର୍କ ଜାଣିବା ସଙ୍ଗେ ସଙ୍ଗେ ମାସ ଗୁଡ଼ିକର କ୍ରମିକ ନାମ ଜାଣିବେ ।

ସୂଚନା

- ''ଚକା ଚକା ଭଉଁରୀ'' ଗଳ୍ପରେ ପିଲାମାନଙ୍କୁ ଦିନ ଓ ସପ୍ତାହ ବିଷୟରେ ଧାରଣା ଦିଆଯିବା ସଙ୍ଗେ ସଙ୍ଗେ ଦିନ ଓ ସପ୍ତାହ ମଧ୍ୟରେ ଥିବା ସଂପର୍କ ଦର୍ଶାଯାଇଛି ।
- ବାରମାସ ନାଟକରେ ମାସ ଓ ବର୍ଷର ଧାରଣା ସହିତ ମାସ ଓ ବର୍ଷ ମଧ୍ୟରେ ଥିବା ସମ୍ପର୍କରେ ଧାରଣା ଦିଆଯାଇଛି ।

ପ୍ରସ୍ତୁତି

ସକ୍ରିୟାତ୍ମକ କାର୍ଯ୍ୟ

> ରବିପରେ ସୋମ ତା'ପରେ ମଙ୍ଗଳ ତା'ପରେ ଯେ ବୁଧବାର,
> ଗୁରୁ, ଶୁକ୍ର, ଶନି, ଆସେ ଏହିପରି ସାତବାର ଏ ପ୍ରକାର ।

ଏହି ଗୀତଟିକୁ ଶିକ୍ଷକ ପ୍ରଥମେ ବୋଲନ୍ତୁ ଓ ପିଲାମାନେ ତାଙ୍କ ପଛେ ପଛେ ବୋଲନ୍ତୁ ।

- ଚକା ଚାକ ଭଉଁରୀ ଗଳ୍ପରେ ଚିତ୍ର କ୍ୟାଲେଣ୍ଡର ବ୍ୟବହାର କରନ୍ତୁ ।
- ବାରମାସ ନାଟକରେ କେଉଁ ପିଲା କେଉଁ ଭୂମିକାରେ ଅଭିନୟ କରିବାର ବ୍ୟବସ୍ଥା କରାନ୍ତୁ ।

କାର୍ଯ୍ୟ

- ପିଲାମାନଙ୍କୁ ଅର୍ଦ୍ଧ ବୃତ୍ତାକାରରେ ବସାଇ ଗପଟିକୁ ଅଙ୍ଗଭଙ୍ଗୀ ମାଧ୍ୟମରେ ତଥା ଆବଶ୍ୟକ ସ୍ଥଳେ ଚିତ୍ର ଦେଖାଇ ଦିନ ଓ ସପ୍ତାହ ମଧ୍ୟରେ ସମ୍ପର୍କ

ଅଧିକ ତଥ୍ୟ

- ବର୍ଷ, ମାସ, ଦିନ, ଘଣ୍ଟା ପ୍ରଭୃତି ସମୟର ମାପକ ଅଟେ ।
- ବର୍ଷକ ୩୬୫ ଦିନ ୫ ଘଣ୍ଟା ୪୦ମି. ୪୮ ସେକେଣ୍ଡ ପ୍ରାୟ ।
- ପ୍ରତି ୪ ବର୍ଷରେ ଥରେ ଅଧିବର୍ଷ ପଡ଼େ । ୪ ଦ୍ୱାରା ବିଭାଜ୍ୟ ମସିହା ଗୁଡ଼ିକ ଅଧିବର୍ଷ ।
  ୧୦୦ ଦ୍ୱାରା ବିଭାଜ୍ୟ ମସିହାଟି, ୪ ଦ୍ୱାରା ବିଭାଜ୍ୟ ହେଉଥିବା ସତ୍ତ୍ୱେ ତାହା ଅଧିବର୍ଷ ନୁହେଁ ।
- କିନ୍ତୁ ୪୦୦ ଦ୍ୱାରା ବିଭାଜ୍ୟ ବର୍ଷଟି ଅଧିବର୍ଷ ହେବ ।

କ୍ୟାଲେଣ୍ଡର ଚିହ୍ନି କହିବ କିଏ ?

- ପିଲାମାନଙ୍କୁ ଦୁଇ ଦଳରେ ବିଭକ୍ତ କରି ପ୍ରତି ଦଳକୁ ଗୋଟିଏ ଲେଖାଏଁ ସେହି ବର୍ଷର କ୍ୟାଲେଣ୍ଡର ଦିଆଯିବ ।
  ଗୋଟିଏ ଦଳ ଅନ୍ୟଦଳକୁ ପଚାରିବେ ।
- ସେ ବର୍ଷର ଅଗଷ୍ଟ ୧୫ ତାରିଖ କେଉଁ ବାରରେ ପଡ଼ିଥିଲା ?
- ଜାନୁୟାରୀ ୨୬ ତାରିଖ ପଡ଼ିଥିବା ବାରଟିର ନାମ କ'ଣ ?
- ଏହିପରି ଦୁଇଦଳ ପରସ୍ପରକୁ ନିର୍ଦ୍ଦିଷ୍ଟ ସଂଖ୍ୟକ ପ୍ରଶ୍ନ ପଚାରିବେ ।
  ଅଧିକ ସଂଖ୍ୟକ ଠିକ ଉତ୍ତର ଦେଇଥିବା ଦଳ ବିଜୟୀ ଘୋଷିତ ହେବ ।

ଜନ୍ମ ତାରିଖ

- ପିଲାମାନେ ଶିକ୍ଷକ/ପିତାମାତାଙ୍କୁ ପଚାରି ବୁଝି ନିଜ ନିଜ ଜନ୍ମ ତାରିଖ ଜାଣିବେ ଓ ଶ୍ରେଣୀ କକ୍ଷରେ ଥିବା କ୍ୟାଲେଣ୍ଡରରେ ଚିହ୍ନଟ କରିବେ । ନିର୍ଦ୍ଦିଷ୍ଟ ଜନ୍ମ ଦିନ ଜାଣି ଅନ୍ୟ ପିଲାମାନେ ଅଭିବାଦନ ଜଣାଇବେ ।
- କ୍ୟାଲେଣ୍ଡରର କେଉଁ କେଉଁ ମାସରେ ଦିନ ଓ ତାରିଖ ପରସ୍ପର ସମାନ ।

ଜଣାଇବା ପାଇଁ ସୂଚନା ସୃଷ୍ଟି କରିବେ ।

- ପିଲାମାନେ ବାରମାସ ନାଟକରେ ସଫଳ ଅଭିନୟ କଲେ ମାସ ଓ ବର୍ଷ ମଧ୍ୟରେ ଥିବା ସମ୍ପର୍କକୁ ଜାଣିବେ ।
- ପିଲାମାନଙ୍କୁ ଦଳରେ ବସାଇ ବର୍ଷକ କେତେ ମାସ, କେଉଁ ମାସ କେତେ ଦିନ ଓ ଅଧିବର୍ଷ କିପରି ପଡ଼େ, କେଉଁ ମାସରେ ଦିନଟି ଯୋଗ ହୁଏ, ତାହା ଆଲୋଚନା କରି ସ୍ପଷ୍ଟ ଧାରଣା ଦେବେ ।
- ପାଠ୍ୟ ପୁସ୍ତକରେ ପ୍ରକାର କାର୍ଯ୍ୟାବଳୀଗୁଡ଼ିକୁ ପିଲାମାନେ ସମାଧାନ କରି ବହିରେ ଥିବା ଖାଲିସ୍ଥାନରେ ଉତ୍ତର ଲେଖିବେ ।

**ପ୍ରକଳ୍ପ କାର୍ଯ୍ୟ**

ପିଲାଙ୍କୁ କ୍ୟାଲେଣ୍ଡର ଦେଇ ଏକ ନିର୍ଦ୍ଦିଷ୍ଟ ମାସରେ କେତୋଟି ରବିବାର, କେତୋଟି ସୋମବାର ପଡୁଛି ବାହାର କରି ଲେଖି ଆଣିବାକୁ କୁହାଯିବ ।

ଉପକରଣ

- ବାର ଚକ୍ର (ସାତବାର)ର ଚିତ୍ର
  ମାସ ଚକ୍ର (ବାରମାସ)

**ଷଷ୍ଠ ଏକକ ପରୀକ୍ଷଣ**

# କହିଦେଉଥାଇ ପରକୁ

ସମୟ - ୮ ପିରିୟଡ୍



ଦିପୁ- ମୋତେ ପରା କହୁଥିଲୁ, ଆଜି ତୁ କିପରି ପଡ଼ିଲୁ ?

ଦେଖ୍ ଅପା, ମୁଁ ଯେଉଁ କାଠ ଉପର ଦେଇ ଆସିଲି ସେ କାଠର ଉପର ସମାନ ।

ଆଉ ତୁ ଯେଉଁ କାଠ ଉପର ଦେଇ ଆସିଲୁ ସେ କାଠ ଉପର ଗୋଲ- ଏଣୁ ତୋ ଗୋଡ଼ ଖସିଲା, ତୁ ପଡ଼ିଗଲୁ ।

ଦୀପା- ହଁ ରେ ।

ସାର୍ କହୁଥିଲେ ଏପରି ସମାନ ତଳକୁ ସମତଳ ଓ ଅଉ ଗୋଲେଇ ତଳକୁ ବକ୍ରତଳ କୁହାଯାଏ ।

ଆଉ ଜାଣିଛୁ- ଟେବୁଲ ଉପର,ଦିଆସିଲି ସବୁ ପାଖ ମଧ୍ୟ ସମତଳ ।

ସେହିପରି ବଲ୍, କାଚଗୋଲି, ଲେମ୍ବୁ ଆଦି ଜିନିଷର ଉପର ବକ୍ରତଳ ।

## ଅଭ୍ୟାସ

୧.

| ୧. | ଏକାଭଳି ଆଉ ଦୁଇଟି ବସ୍ତୁର ନାମ ଲେଖ । | | |
|---|---|---|---|
| କ. | ବଲ୍ | | |
| ଖ. | ଗୁଲିବାଡ଼ି | | |
| ଗ. | ଦିଆସିଲି | | |
| ଘ. | କାହାଳି | | |

୨. ଉଦାହରଣରେ ଦେଖାଯାଇ ଥିବା ପରି ଗାର ଟାଣି ଦେଖାଅ । ଯେପରି -



୩.

(କ) ତଳେ ଦିଆଯାଇଥିବା ଚିତ୍ରମାନଙ୍କରେ ଯେଉଁଟି ବକ୍ରତଳ ତା'ରି ପାଖରେ ଠିକ୍ ଚିହ୍ନ ଦିଅ ।



(ଖ) ଯେଉଁଟି ସମତଳ ତା ପାଖରେ ଠିକ୍ ଚିହ୍ନ ଦିଅ ।



(ଗ) ଯେଉଁ ଗୁଡ଼ିକ ସମତଳ ଓ ବକ୍ରତଳ ତା ପାଖରେ ଠିକ୍ ଚିହ୍ନ ଦିଅ ।



କ'ଣ ଶିଖିବେ

- ସମତଳ ଓ ବକ୍ରତଳର ଧାରଣା ପାଇବେ ।
- ସମତଳ ବିଶିଷ୍ଟ, ବକ୍ରତଳ ବିଶିଷ୍ଟ ଓ ଉଭୟ ସମତଳ ଓ ବକ୍ରତଳ ବିଶିଷ୍ଟ ବସ୍ତୁ ଗୁଡ଼ିକୁ ଚିହ୍ନିବେ ।

ସୂଚନା

- ''କହି ଦେଉଥାଇ ପରକୁ'' ଗଳ୍ପରେ ସମତଳ, ବକ୍ରତଳ ବିଷୟରେ ଧାରଣା ଦିଆଯାଇଛି ।

ପ୍ରସ୍ତୁତି

ମଣ୍ଡା ପିଠା ଗୋଲଗୋଲ
ଆଉ କ'ଣ କୁହ ଗୋଲ

- ପିଲାମାନେ ଗୋଲ ହୋଇ ଠିଆହେବେ । ଗୋଟିଏ ପିଲା ''ମଣ୍ଡାପିଠା ଗୋଲ ଗୋଲ'' କହି ଗୀତଟି ଗାଇବେ ଓ ଅନ୍ୟ ପିଲାମାନେ ସେହିପରି ପାଳିଧରି ଗାଇବେ । ଜଣେ ମଝିରେ ରହି କହୁଥିବ । ମଝିରେ ରହି କହୁଥିବା ପିଲା ଯେଉଁ ପିଲା ପାଖକୁ ଯିବ ତା'କୁ ପଚାରିବ । ''ମଣ୍ଡା ପିଠା ଗୋଲ ଗୋଲ, ଆଉ କ'ଣ କୁହ ଗୋଲ୍ ।'' ଯେଉଁ ପିଲାକୁ ପଚରାଯିବ ସେ କହିବ କମଳା ଲେମ୍ବୁ ଗୋଲ୍ ଗୋଲ୍ । ଏଭଳି ସବୁ ପିଲାଙ୍କୁ ପଚରାଯିବ । ଯେଉଁ ପିଲା କହି ନ ପାରିବ ସେ ପିଲା ମଝିରେ ରହି ଖେଳ ପରିଚାଳନା କରିବ । କହିଥିବା ଜିନିଷର ନାମ ପୁନରାବୃତ୍ତି ହେବ ନାହିଁ ।

କାର୍ଯ୍ୟ

- ଶିକ୍ଷକ 'କହି ଦେଉ ଥାଇ ପରକୁ' ଗପଟି କହିବା ପାଇଁ ଆବଶ୍ୟକ ହୋଇଥିବା ଚିତ୍ର ପ୍ରସ୍ତୁତ କରି ଆଣନ୍ତୁ ।

ଆମେ ଜାଣିବା

- ଏକ ବକ୍ରତଳ ବିଶିଷ୍ଟ ଘନ ବସ୍ତୁ ଗୋଲକ ।
- ଏକ ବକ୍ରତଳ ଓ ଏକ ସମତଳ ବିଶିଷ୍ଟ ଘନ ବସ୍ତୁ ହେଉଛି କୋନ୍ ।
- ଏକାଧିକ ସମତଳ ବିଶିଷ୍ଟ ଘନ ବସ୍ତୁ ଅଛି ।
- ପିଲାମାନେ ବିଭିନ୍ନ ପ୍ରକାର ସମତଳ ଓ ବକ୍ରତଳ ବିଶିଷ୍ଟ ବସ୍ତୁ ସଂଗ୍ରହ କରିବେ ।
- ସେଗୁଡ଼ିକ ଦଳ ମଧ୍ୟରେ ରଖି ତାଲିକା କରିବେ ।
- ତାଲିକାରେ ଥିବା ସମତଳ ବସ୍ତୁ ଗୁଡ଼ିକୁ ଗୋଲ ବୁଲାଇବେ ।

ପ୍ରକଳ୍ପ କାର୍ଯ୍ୟ

- ପିଲାମାନେ ସେମାନଙ୍କର ଘରେ ବ୍ୟବହାର କରୁଥିବା କେତେଗୁଡ଼ିଏ ସମତଳ ଓ ବକ୍ରତଳ ବିଶିଷ୍ଟ ବସ୍ତୁର ଏକ ତାଲିକା କରିବେ ।

**ଗଳ୍ପ କଥନ**

- ଶିକ୍ଷକ 'କହିଦେଉଥାଇ ପରକୁ ଗପଟି କହିବେ ।'ଗପ କହିବା ସମୟରେ ପିଲାମାନଙ୍କୁ ଅର୍ଦ୍ଧ ବୃତ୍ତାକରରେ ବସାଇବେ ଓ ଆବଶ୍ୟକ ସ୍ଥଳେ ଚିତ୍ର ବ୍ୟବହାର କରିବେ । ମଝିରେ ମଝିରେ ଛୋଟ ଛୋଟ ପ୍ରଶ୍ନ ପଚାରିବେ ଓ ଶେଷରେ ନିମ୍ନଲିଖିତ ପ୍ରଶ୍ନ ପଚାରିବେ ।
- ବାପା କାହିଁକି ପଡ଼ିଗଲା ?
- ଦିପୁ ଯେଉଁ କାଠ ଉପର ଦେଇ ନାଳ ପାର ହେଲା ତା'ର କଣ ରହିଲା ?

**ଆଲୋଚନା**

- ବିଭିନ୍ନ ବସ୍ତୁ ଓ ମଡ଼େଲ ବ୍ୟବହାର କରି ପିଲାମାନେ ସମତଳ, ବକ୍ରତଳର ଧାରଣା କିପରି ପାଇ ପାରିବେ ସେଥିପାଇଁ ବ୍ୟବସ୍ଥା କରିବେ ।
- ପିଲାମାନେ ବିଭିନ୍ନ ବସ୍ତୁ ଓ ମଡ଼େଲ ଦେଖି କେଉଁ ଗୁଡ଼ିକ ସମତଳ ଓ କେଉଁ ଗୁଡ଼ିକ ବକ୍ରତଳ, ଦଳରେ ଆଲୋଚନା କରି ତା'ର ତାଲିକା ପ୍ରସ୍ତୁତ କରିବେ । ଆବଶ୍ୟକ ସ୍ଥଳେ ଅନ୍ୟଦଳ ତଥା ଶିକ୍ଷକଙ୍କ ସାହାଯ୍ୟ ନେଇ ପାରିବେ ।
- ପରିବେଶରୁ ମିଳୁଥିବା ଜିନିଷ ମନେ ପକାଇ ସେଗୁଡ଼ିକ କି ପ୍ରକାର ତଳ ତା'ର ତାଲିକା ପ୍ରସ୍ତୁତ କରିବେ ।

| କ୍ରନଂ | ଜିନିଷର ନାମ | ସମତଳ | ବକ୍ରତଳ |
|---|---|---|---|
| ୧. | ଦିଆସିଲି | ସମତଳ | |
| ୨. | ପେନସିଲ | | ବକ୍ରତଳ |

- କାର୍ଯ୍ୟାବଳୀରେ ପ୍ରଦତ୍ତ ପ୍ରଶ୍ନ ଗୁଡ଼ିକର ସମାଧାନ କରି ଖାଲିଥିବା ସ୍ଥାନ ପୂରଣ କରିବେ ।

ଉପକରଣ

- ସମତଳ, ବକ୍ରତଳ ବିଶିଷ୍ଟ ବିଭିନ୍ନ ମଡ଼େଲ ଓ ଚିତ୍ର

# ନାଁ ଦେବି କ'ଣ

ସମୟ - ୮ ପିରିୟଡ୍




୧. ତଳେ ଦିଆଯାଇଥିବା ଆକୃତି ଗୁଡ଼ିକର ନାମ ତଳ ବାକ୍ସରେ ଲେଖ ।



୨. ଆକୃତି ଗୁଡ଼ିକ ସାମନାରେ ସେହିପ୍ରକାର ଆକୃତି ତିଆରି କର ।

| | | |
|---|---|---|
| ■ | | |
| ▬ | | |
| ● | | |
| ▲ | | |

୩. ତଳେ ଲେଖାଯାଇଥିବା ବସ୍ତୁଗୁଡ଼ିକର ଆକୃତି ତିଆରିକର ।

| | |
|---|---|
| ରୁମାଲ | |
| ତଉଲିଆ | |
| ଚକ | |
| ପତାକା | |

୪. ଆକୃତିଗୁଡ଼ିକୁ ସେମାନଙ୍କ ନାମ ଲେଖାଯାଇଥିବା ସ୍ଥାନରେ ତିଆରିକର ।

| | |
|---|---|
| ତ୍ରିଭୁଜ | ବର୍ଗଚିତ୍ର |
| ବୃତ୍ତ | ଆୟତଚିତ୍ର |

୫. ଆକୃତିଗୁଡ଼ିକୁ ଚିହ୍ନାଅ ।



୬.



ସବୁଠାରୁ ବଡ଼ ବୃତ୍ତଟିକୁ ନାଲିରଙ୍ଗ ଦିଅ ।
ସବୁଠାରୁ ଛୋଟ ବୃତ୍ତଟିକୁ କଳାରଙ୍ଗ ଦିଅ ।

୭. ଗାର ଗୁଡ଼ିକୁ ଯୋଡ଼ି ବର୍ଗ ଚିତ୍ର ଓ ଆୟତ ଚିତ୍ର ତିଆରି କର ।
'କ' ଚିତ୍ରରେ ସବୁଜ ରଙ୍ଗ ଦିଅ ଓ 'ଖ' ଚିତ୍ରରେ ନୀଳ ରଙ୍ଗ ଦିଅ ।

(କ) 

(ଖ) 

(ଗ) 

(ଘ) 

୮. ଗାର ଗୁଡ଼ିକୁ ଯୋଡ଼ି ତ୍ରିଭୁଜ ତିଆରି କର ।



୯. ତ୍ରିଭୁଜ ଗୁଡ଼ିକରେ ରଙ୍ଗ ଦିଅ ।
ସବୁଠାରୁ ବଡ଼ ତ୍ରିଭୁଜରେ ନାଲିରଙ୍ଗ ଦିଅ ।
ସବୁଠାରୁ ଛୋଟ ତ୍ରିଭୁଜ ରେ ହଳଦିଆ ରଙ୍ଗ ଦିଅ ।



୧୦. ଗାରଗୁଡ଼ିକୁ ଯୋଡ଼ି ଆୟତାକାର ତିଆରି କର । ତୁମ ନିଜ ଇଚ୍ଛା ଅନୁସାରେ ରଙ୍ଗ ଦିଅ ।



୧୧. ତଳେ ଅଲଗା ଅଲଗା ଆକାରର ଚୁଡ଼ି ବ୍ୟବହାର କରି ବୃତ୍ତ ଅଙ୍କନ କର ।

୧୨. ତଳେ ଦିଆସିଲି ପକାଇ ସାନବଡ଼ ଆୟତ ଚିତ୍ର ଅଙ୍କନ କର ।

୧୩. ଦିଆସିଲି କାଠିରେ ଆୟତଚିତ୍ର ଓ ତ୍ରିଭୁଜ ଅଙ୍କନ କରି ସେଥିରୁ ବିଭିନ୍ନ ଆକୃତିର ଚିତ୍ର ଅଙ୍କନ କର ।

୧୪.



ସବୁଠାରୁ ବଡ଼ ବୃତ୍ତଟିକୁ ନାଲି ରଙ୍ଗ ଦିଅ
ସବୁଠାରୁ ଛୋଟ ବୃତ୍ତଟିକୁ କଳାରଙ୍ଗ ଦିଅ ।

୧୫. ଗାରଗୁଡ଼ିକ ଯୋଡ଼ି ତ୍ରିଭୁଜ ତିଆରି କର ।



୧୬. ତ୍ରିଭୁଜ ଗୁଡ଼ିକରେ ରଙ୍ଗ ଦିଅ ।
ସବୁଠାରୁ ବଡ଼ ତ୍ରିଭୁଜରେ ନାଲି ରଙ୍ଗ ଓ ସବୁଠାରୁ ଛୋଟ ତ୍ରିଭୁଜରେ ହଳଦିଆ ରଙ୍ଗ ଦିଅ ।



୧୭. ଗାର ଗୁଡ଼ିକୁ ଯୋଡ଼ି ଆୟତ ଆକାର ଚିତ୍ର ଅଙ୍କନ କର ।
ସବୁଗୁଡ଼ିକ ଅଲଗା ଅଲଗା ରଙ୍ଗ ଦିଅ ।



୧୮. ତଳେ ଚୁଡ଼ି ରଖି ବୃତ୍ତ ଚିତ୍ର ଅଙ୍କନ କର ଓ ତା' ଭିତରେ ମନରୁ ଚିତ୍ରଟିଏ ଅଙ୍କନ କର ।

୧୯. ଦିଆସିଲି ଓ ଚୁଡ଼ି ବ୍ୟବହାର କରି ମଣିଷର ଚିତ୍ର ଅଙ୍କନ କର ।

**କ'ଣ ଶିଖିବେ**

- ସରଳ ରୈଖିକ ଧାର ବା ବକ୍ର ଧାର ଥିବା ବସ୍ତୁ ଗୁଡ଼ିକୁ ବ୍ୟବହାର କରି ସମତଳ ଚିତ୍ର ଯଥା- ଆୟତଚିତ୍ର, ତ୍ରିଭୁଜ ଓ ବୃତ୍ତ ଅଙ୍କନ କରିବେ ।

**ସୂଚନା**

- 'ନାଁ ଦେବି କ'ଣ' ଚିତ୍ର ମାଧ୍ୟମରେ ଆୟତଚିତ୍ର, ତ୍ରିଭୁଜ ଓ ବୃତ୍ତର ଧାରଣା ଦିଆଯାଇଛି । ଗୁଡ଼ି ଦ୍ୱାରା ବୃତ୍ତ, ଦିଆସିଲି ଦ୍ୱାରା ଆୟତ ଚିତ୍ର ଓ ପ୍ରିଜିମ୍ ତ୍ରିଭୁଜ ଅଙ୍କନ କରାଯାଇଛି ।

**ପ୍ରସ୍ତୁତି**

- ଆୟତ କୃତି, ତ୍ରିଭୁଜାକୃତି ଓ ବୃତ୍ତାକୃତି ଥିବା ବସ୍ତୁ ବା ପଦାର୍ଥ ସଂଗ୍ରହ କରି ଆଣନ୍ତୁ ।
- ବିଦ୍ୟାଳୟରେ ଥିବା ଜ୍ୟାମିତି ବାକ୍ସ ସାଙ୍ଗରେ ଆଣନ୍ତୁ ।
- ଆୟତ ଚିତ୍ର, ବୃତ୍ତ ଓ ତ୍ରିଭୁଜର ଫ୍ଲାସ କାର୍ଡ଼ ଓ ମଡ଼େଲ ଆଣନ୍ତୁ ।

**କାର୍ଯ୍ୟ**

- ଶିକ୍ଷକ ପିଲା ମାନଙ୍କୁ ''ନାଁ ଦେବି କ'ଣ'' ଚିତ୍ରଟି ଦେଖିବାପାଇଁ କହନ୍ତୁ । ଚିତ୍ରକୁ ପିଲାମାନେ ଦେଖି ସାରିଲା ପରେ ନିମ୍ନଲିଖିତ ପ୍ରଶ୍ନ ପଚାରନ୍ତୁ ।
- ଝିଅଟି କେଉଁ କେଉଁ ଜିନିଷ ସାହାଯ୍ୟରେ ଚିତ୍ର ଆଙ୍କିଲା ?
- ଚିତ୍ର ଗୁଡ଼ିକୁ କିଏ ଆଙ୍କିଲା ?
- ଦିଆସିଲିରେ କେଉଁ ଚିତ୍ର ଆଙ୍କିଲା ?
- ବୃତ୍ତ ଚିତ୍ର ଆଙ୍କିବା ପାଇଁ କ'ଣ ବ୍ୟବହାର କଲା ?
- ତ୍ରିଭୁଜ ଚିତ୍ର କେଉଁ ଜିନିଷ ବ୍ୟବହାର କରି ଆଙ୍କିଲା ?

**ଅଧିକ ତଥ୍ୟ**

- ଆୟତଚିତ୍ର ଓ ତ୍ରିଭୁଜ, ରେଖାଖଣ୍ଡ ଦ୍ୱାରା ଆବଦ୍ଧ ଏବଂ ବୃତ୍ତ ବକ୍ରରେଖା ଦ୍ୱାରା ଆବଦ୍ଧ କ୍ଷେତ୍ର ଅଟେ ।
- ଆୟତ ଚିତ୍ର, ବୃତ୍ତ ଓ ତ୍ରିଭୁଜ ଏ ସମସ୍ତ ସମତଳରେ ଅବସ୍ଥାନ କରନ୍ତି ।
- ଏ ସମସ୍ତ ଚିତ୍ର ସମତଳରେ ଅଙ୍କନ କରାଯାଏ ।
- ବୃତ୍ତର କେନ୍ଦ୍ର ବିନ୍ଦୁଠାରୁ ପରିଧିରେ ଯେକୌଣସି ବିନ୍ଦୁ ମଧ୍ୟରେ ଦୂରତା/ ବ୍ୟବଧାନ ସମାନ ।

**କାର୍ଯ୍ୟ**

- ପିଲାମାନେ ପରିବେଶରୁ ମିଳୁଥିବା ବିଭିନ୍ନ ପ୍ରକାର ସମତଳ ଚିତ୍ର ସଂଗ୍ରହ କରି ବର୍ଗୀକରଣ କରିବେ ।

**ପ୍ରକଳ୍ପ କାର୍ଯ୍ୟ**

- ପିଲାମାନେ ଆୟତଚିତ୍ର, ତ୍ରିଭୁଜ ଓ ବୃତ୍ତାକାର ବିଶିଷ୍ଟ ବିଭିନ୍ନ ଛବି ଅଙ୍କନ କରି ତ୍ରିଭୁଜକୁ ଲାଲ ରଙ୍ଗ, ଆୟତଚିତ୍ରକୁ ସବୁଜ ରଙ୍ଗ ଓ ବୃତ୍ତକୁ ହଳଦିଆ ଦେବେ ।

**ଉପକରଣ**

- ରଙ୍ଗ (ଲାଲ, ସବୁଜ, ହଳଦିଆ)
  କାଗଜ, ତୁଳୀ

ପିଲାମାନେ ଦଳ ଦଳ ହୋଇ ବସିବେ ।

- ବିଭିନ୍ନ ଆକାରର ଘନ ବସ୍ତୁ ଖାତା ଉପରେ ପକାଇ ତା' ଚାରିପାଖରେ ଗାର ଟାଣି ଆୟତ ଚିତ୍ର , ତ୍ରିଭୁଜ ଓ ବୃତ୍ତର ଚିତ୍ର ଅଙ୍କନ କରି ଦଳରେ ଅନ୍ୟପିଲା ଏବଂ ଶିକ୍ଷକଙ୍କ ସହାୟତାରେ ସେ ଗୁଡ଼ିକର ନାମ କ'ଣ ଲେଖିବେ ।

**ଉପକରଣ**

ଜ୍ୟାମିତି ବାକ୍ସ

ଆୟତଚିତ୍ର, ବୃତ୍ତ, ଓ ତ୍ରିଭୁଜ, ଫ୍ଲାସ କାର୍ଡ଼ ଓ ମଡ଼େଲ କାର୍ଡ଼ବୋର୍ଡ଼ ଦ୍ୱାରା ତିଆରି ହୋଇଥିବ ।

# ପୁଅ ଝିଅ ସମାନ

ସମୟ - ୭ ପିରିୟଡ୍

ପୁଅଟି ବଡ଼ ଝିଅଟି ସାନ
ମୋ ଆଖିରେ ଦୁହେଁ ସମାନ




ମୟୂର ସେଓଟିକୁ ସମାନ ଦୁଇଭାଗ କଲା ।
ପୁଅକୁ ୧ ଭାଗ ସେଓ ଦେଲା ।
ଝିଅକୁ ୧ ଭାଗ ସେଓ ଦେଲା ।
ପୁଅ ଅଧା ସେଓ ଖାଇଲା ।
ଝିଅ ଅଧା ସେଓ ଖାଇଲା ।
ପ୍ରତ୍ୟେକ ଭାଗ ଗୋଟା ସେଓର ଅଧା ।

## ମୂଷାର ପିଜୁଳି କଟା

ମୂଷା ପିଜୁଳିକୁ ସମାନ ଦୁଇ ଭାଗ କଲା ।
ପୁଣି ସେ ପିଜୁଳିର ପ୍ରତ୍ୟେକ ଅଧାକୁ ସମାନ ଦୁଇ ଭାଗ କଲା ।

ଏବେ ପିଜୁଳିଟି ସମାନ ୪ ଭାଗ ହେଲା ।
ଏହି ସମାନ ଚାରି ଭାଗରୁ ଏକ ଭାଗ
ଗୋଟା ପିଜୁଳିର ଏକ ଚଉଠ ।

## ଚିଣ୍ଟୁର ଅଧେକୁ ପିଣ୍ଟୁର ଅଧେ








ଚିଣ୍ଟୁ କେତେ ନେଲା ?

ପିଣ୍ଟୁ କେତେ ନେଲା ?

ଚିତ୍ର ଦେଖି କହ ।



# ଅଭ୍ୟାସ

୧. ଆଉ ଅଧା ରଙ୍ଗେଇ ଦିଅ ।



୨. ମୋ ଅଧାକ ରଙ୍ଗେଇ ଦିଅ ।



୩. ମୋର ଚଉଠ ରଙ୍ଗେଇ ଦିଅ ।









## ମିନି ଓ ମିକି ଘରକୁ ଯିବେ, ବାଟ ବତାଅ ।
## ( ଚିତ୍ରରେ ରଙ୍ଗ ଦିଅ ।)





**କ'ଣ ଶିଖିବେ** ଅଧା, ଚଉଠର ଧାରଣା ପାଇବେ ।

**ସୂଚନା**

- ପୁଅଝିଅ ସମାନ ଗଳ୍ପ ମାଧ୍ୟମରେ ଅଧା, ଚଉଠ, ଧାରଣା ଦିଆଯାଇଛି ।

**ପ୍ରସ୍ତୁତି**

- ଶିକ୍ଷକ ପିଲାମାନଙ୍କୁ ବୃତ୍ତାକାରରେ ବସାଇ ଓ ନିଜେ ପିଲାମାନଙ୍କ ମଧ୍ୟରେ ବସି ଅଧା ଓ ଚଉଠର ଧାରଣା ଦେବାକୁ ଯାଇ 'ପିଠାକଳି' ଗଳ୍ପଟି ଶୁଣାନ୍ତୁ ।
- ଶିକ୍ଷକ ଓ ପିଲାମାନେ ପରିବେଶରୁ ବିଭିନ୍ନ ଫଳ ଯଥା- ଲେମ୍ବୁ,ପିଆଜ, କମଳା, ପିଜୁଳି, ଏବଂ ବିଭିନ୍ନ ପତ୍ର ଯଥା-ବର, ଅଶ୍ୱତଥ୍, ଅଗସ୍ତୀ, ପାନ ଆଦି ସଂଗ୍ରହ କରି ଆଣନ୍ତୁ ।

**କାର୍ଯ୍ୟ**

- ପୁଅଝିଅ ସମାନ ଚିତ୍ରରେ ପିଲାମାନେ କ'ଣ କ'ଣ ଦେଖୁଛନ୍ତି ଜଣ ଜଣ କରି ସମସ୍ତେ ଗୋଟିଏ ଲେଖାଏଁ ବାକ୍ୟ କହନ୍ତୁ ।
- ସବୁ ପିଲା କହି ସାରିବା ପରେ ଶିକ୍ଷକ ପିଲାମାନଙ୍କ ଠାରୁ ନିମ୍ନ ପ୍ରଶ୍ନ ଗୁଡ଼ିକର ଉତ୍ତର ଆଦାୟ କରନ୍ତୁ । ପ୍ରତ୍ୟେକ ପିଲା ଯେପରି ଉତ୍ତର ଦେବାପାଇଁ ସକ୍ଷମ ହେବେ ସେଥିପ୍ରତି ଦୃଷ୍ଟି ଦିଅନ୍ତୁ ।
- ମୟୂର ପାଖରେ କେତୋଟି ସେଓ ଥିଲା ?
- ମା, ପୁଅ ଝିଅ ଦୁହିଁଙ୍କୁ ସେଓଟିକୁ କିପରି ଖାଇବାକୁ ଦେଲା ?
- ପୁଅ କେତେ ଖାଇଲା ।
- ଝିଅ କେତେ ଖାଇଲା
- ପାଠ୍ୟ ପୁସ୍ତକ କାର୍ଯ୍ୟବଳୀରେ ଦିଆଯାଇଥିବା ବସ୍ତୁଗୁଡ଼ିକର ଅଧା ଓ ଚଉଠକୁ ରଙ୍ଗ ଦିଅନ୍ତୁ ।

**ଉପକରଣ** ସେଓ .

**ଆମେ ଜାଣିବା**

ଗୋଟିଏ ଜିନିଷକୁ ଭାଗ କରିବା ସମୟରେ ଭଗ୍ନାଂଶର ଆବଶ୍ୟକତା ପଡ଼େ ।

- ଭାଗ କରିବା ସମୟରେ ପ୍ରତ୍ୟେକ ଭାଗ ସମାନ ହେବା ଦରକାର ।

**କାର୍ଯ୍ୟ**

- ପିଲାମାନଙ୍କୁ ଦଳରେ ବସାଇ ପ୍ରତି ଦଳକୁ ଲେମ୍ବୁ, ପିଆଜ, ପିଜୁଳି, କମଳା ଓ ବର ଅଶ୍ୱତ୍ଥ, ପାନ ପତ୍ର ଦେଇ, ଅଧା, ଚଉଠ କରିବାକୁ କୁହାଯିବ ।
- ପିଲାମାନଙ୍କୁ ଦଳରେ ଭାଗ କରି ବସାଇ ଦିଆଯିବ ।
- ଚାରିକୋଣିଆ ଗୋଲାକାର କାଗଜର ଅଧା ଓ ଚଉଠ ଭାଗକୁ ଗାର ପକାଇ ଚିହ୍ନଟ କରନ୍ତୁ ।
- ପିଲାମାନଙ୍କୁ ଗୋଲାକାର ଚାରିକୋଣିଆ କାଗଜ ଅଧା ଓ ଚଉଠ ଭାବରେ କଟାଯାଇ ଦିଆଯିବ । ସେମାନେ ସେଇ ଅଂଶକୁ ଯୋଡ଼ି ପୂର୍ଣ୍ଣାଙ୍ଗ ଚିତ୍ର କରି ଦେଖାନ୍ତୁ ।
- ପିଲାମାନେ କାଗଜର କାର୍ଡ଼ବୋର୍ଡ଼ ଚିରି ବା କାଟି ଅଧା ଓ ଚଉଠ ଆକାରର କରି ଧାରଣାକୁ ଦୃଢ଼ୀଭୂତ କରାନ୍ତୁ ।

**ଉପକରଣ**

ଲେମ୍ବୁ, ପିଆଜ, ପିଜୁଳି, କମଳା, ବରପତ୍ର, ଅଶ୍ୱତ୍ଥ ପତ୍ର, ପାନ ପତ୍ର, ଗୋଲ ଓ ଚାରିକଣିଆ କାଗଜ ବା ଡ୍ରଇଂସିଟ୍, କାର୍ଡ଼ବୋର୍ଡ଼, କଇଁଚି, ଛୁରୀ,ରଙ୍ଗ , ତୂଳୀ

**ପ୍ରକଳ୍ପ କାର୍ଯ୍ୟ**

ପିଲାମାନଙ୍କୁ କମଳା, ସେଓ, ପିଜୁଳି ଓ ଅମୃତଭଣ୍ଡାର ଚିତ୍ର ଅଙ୍କନ କରିବାକୁ କୁହାଯିବ ଏବଂ ସେ ଫଳ ଗୁଡ଼ିକର ଅଧା ଅଂଶକୁ ରଙ୍ଗ କରି ଆଣିବା ପାଇଁ କୁହାଯିବ ।

**ବାର୍ଷିକ ପରୀକ୍ଷା**

## ଗଣିତରେ ନ୍ୟୂନତମ ଶିକ୍ଷଣ ସ୍ତର (ଦ୍ୱିତୀୟ ଶ୍ରେଣୀ)

| କ୍ର. ନଂ. | ପ୍ରସଙ୍ଗ | କ୍ରମାଙ୍କ | ଦକ୍ଷତା |
|---|---|---|---|
| ୧. | ପୂର୍ଣ୍ଣସଂଖ୍ୟା ଓ ସଂଖ୍ୟା ସୂଚକଗୁଡ଼ିକୁ ବୁଝିବା । | ୧.୨.୧ | ଦୁଇ ଅଙ୍କବିଶିଷ୍ଟ ସଂଖ୍ୟାର ସ୍ଥାନୀୟମାନ ବୁଝିବେ । ୨୧ ରୁ ୯୯ ପର୍ଯ୍ୟନ୍ତ ସଂଖ୍ୟାକୁ ଦଶକ ଓ ଏକକରେ ବିସ୍ତାରିତଭାବେ ପ୍ରକାଶ କରିବେ ଏବଂ ଏହି ବିସ୍ତାରିତ ଆକାରକୁ ଦୁଇ ଅଙ୍କବିଶିଷ୍ଟ ସଂଖ୍ୟାଭାବେ ପ୍ରକାଶ କରିବେ । |
| | | ୧.୨.୨ | ଦୁଇ ଅଙ୍କବିଶିଷ୍ଟ ସଂଖ୍ୟାର ସ୍ଥାନୀୟମାନ ନିର୍ଣ୍ଣୟ କରିବେ । |
| | | ୧.୨.୩ | ପ୍ରଥମ, ଦ୍ୱିତୀୟ, ତୃତୀୟ ଭଳି ପ୍ରଥମରୁ ଦଶମ ପର୍ଯ୍ୟନ୍ତ ପୂରଣବାଚକ ସଂଖ୍ୟାଗୁଡ଼ିକୁ ବୁଝିବେ । |
| | | ୧.୨.୪ | ଦୁଇ ଦୁଇଟି, ପାଞ୍ଚ ପାଞ୍ଚଟି ବା ଦଶ ଦଶଟି କରି ଗଣି ଗୋଟିଏ ସେଟ୍‌ରେ ଥିବା ମୋଟ ବସ୍ତୁ ସଂଖ୍ୟା ନିର୍ଣ୍ଣୟ କରିବେ । (ସେଟ୍‌ରେ ମୋଟ ବସ୍ତୁ ସଂଖ୍ୟା ୧୦୦ରୁ ଅଧିକ ହେବ ନାହିଁ ।) |
| ୨. | ପୂର୍ଣ୍ଣସଂଖ୍ୟାଗୁଡ଼ିକର ଯୋଗ, ବିୟୋଗ, ଗୁଣନ ଓ ଭାଗ କରିବା । | ୨.୨.୧ | ଦୁଇଟି ବା ତିନୋଟି ଦୁଇ ଅଙ୍କ ଓ ଏକ ଅଙ୍କ ବା କେବଳ ଦୁଇ ଅଙ୍କବିଶିଷ୍ଟ ସଂଖ୍ୟାଗୁଡ଼ିକୁ ଯୋଗ କରିବେ, ଯେପରିକି ଯୋଗଫଳ ୯୯ରୁ ଅଧିକ ନ ହୁଏ । (ଏକକ ଘରୁ ସଂଖ୍ୟା ନ ନେଇ ବା ନେଇ) |
| | | ୨.୨.୨ | ଦକ୍ଷତା ୨.୨.୧ ଦ୍ୱାରା ଏକ ସୋପାନରେ ସମାଧାନ ହେଲାଭଳି ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ କରିବେ । |
| | | ୨.୨.୩ | '୦' ରୁ ୧୮ ମଧ୍ୟରେ ଦୁଇଟି ସଂଖ୍ୟାକୁ ମୌଖିକଭାବେ ଯୋଗ କରିବେ, ଯେପରିକି ଯୋଗଫଳ ୧୮ରୁ ଅଧିକ ନ ହୁଏ । |
| | | ୨.୨.୪ | ଦଶକ ଘରୁ ସଂଖ୍ୟା ଧାର ନକରି ବା ଧାର କରି ଦୁଇ ଅଙ୍କବିଶିଷ୍ଟ ସଂଖ୍ୟାମାନଙ୍କର ବିୟୋଗ କରିବେ । |
| | | ୨.୨.୫ | ଦକ୍ଷତା ୨.୨.୪ ଦ୍ୱାରା ଏକ ସୋପାନରେ ସମାହିତ ହେବାଭଳି ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ କରିବେ । |
| | | ୨.୨.୬ | ୧୮ ମଧ୍ୟରେ ଦୁଇଟି ସଂଖ୍ୟା ମୌଖିକଭାବେ ବିୟୋଗ କରିବେ । |
| | | ୨.୨.୭ | ୨,୩,୪,୫,୧୦ ଓ ୧କୁ ଗୁଣନୀୟକଭାବେ ନେଇ ଗୁଣନକୁ ଏକ ସଂଖ୍ୟାର ବାରମ୍ବାର ଯୋଗରୂପେ ବୁଝିବେ । |

| କ୍ର. ନଂ. | ପ୍ରସଙ୍ଗ | | ଦକ୍ଷତା |
|---|---|---|---|
| | | ୨.୨.୮ | ଗୁଣନ ଚିହ୍ନ (×) କୁ ଚିହ୍ନିବେ ଓ ବ୍ୟବହାର କରିବେ । |
| | | ୨.୨.୯ | ୧,୨,୩,୪,୫ ଏବଂ ୧୦ ର ଗୁଣନଖନ୍ଦାଗୁଡ଼ିକ ଲେଖିବେ ଓ ମନେରଖିବେ । |
| | | ୨.୨.୧୦ | ୧,୨,୩,୪,୫ ଏବଂ ୧୦ ର ଗୁଣନଖନ୍ଦାଗୁଡ଼ିକୁ ବ୍ୟବହାର କରି ଏକ ସୋପାନରେ ସମାହିତ ହେଉଥିବା ଦୈନନ୍ଦିନ ଜୀବନର ସମସ୍ୟାଗୁଡ଼ିକୁ ସମାଧାନ କରିବେ । (କୌଣସି ଉତ୍ପାଦକ ବା ଗୁଣନୀୟକ ୧୦ରୁ ଅଧିକ ହେଉ ନ ଥିବ ।) |
| | | ୨.୨.୧୧ | ଅଧା ଓ ଚଉଠର ଧାରଣା ଲାଭ କରିବେ । |
| ୩. | ଟଙ୍କା ପଇସା (ମୁଦ୍ରା), ଦୈର୍ଘ୍ୟ, ବସ୍ତୁତ୍ୱ (ଓଜନ, ଧାରକତ୍ୱ) ସମୟ ଓ କ୍ଷେତ୍ରଫଳର ଏକକ ଗୁଡ଼ିକୁ ବ୍ୟବହାର କରି ତତ୍ସମ୍ବନ୍ଧୀୟ ଦୈନନ୍ଦିନ ଜୀବନର ସରଳ ସମସ୍ୟାଗୁଡ଼ିକର ସମାଧାନ କରିବା । | ୩.୨.୧ | ବିଭିନ୍ନ ପ୍ରକାରର ବାସ୍ତବ ଅଥବା ଖେଳନା ମୁଦ୍ରା ମିଶାଇ ଏକ ଟଙ୍କା ମୂଲ୍ୟ ପର୍ଯ୍ୟନ୍ତ ହିସାବ କରିବେ । |
| | | ୩.୨.୨ | ମୁଦ୍ରାମାନଙ୍କର ମୂଲ୍ୟର ଯୋଗଫଳ ବା ବିୟୋଗଫଳ ଏକ ଟଙ୍କା ମଧ୍ୟରେ ସୀମିତ ରଖି ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ କରିବେ । |
| | | ୩.୨.୩ | ୫ ପଇସା ଓ ୧୦ ପଇସାର ଗୁଣିତକମାନଙ୍କୁ ବ୍ୟବହାର କରି ଏକ ଟଙ୍କା ପର୍ଯ୍ୟନ୍ତ ହିସାବ କରି ଦୈନନ୍ଦିନ ଜୀବନର ସମସ୍ୟା ଗୁଡ଼ିକର ମୌଖିକ ସମାଧାନ କରିବେ । |
| | ଦୈର୍ଘ୍ୟ | ୩.୨.୪ | ନିଜ ନିକଟ ପରିବେଶରେ ଥିବା ବସ୍ତୁଗୁଡ଼ିକର ଦୈର୍ଘ୍ୟ ମାପିବାପାଇଁ ଅଣମାନକ ଏକକ ଯଥା- ହାତ, ମଣିଷ ପାଦ, ବାଡ଼ି ଇତ୍ୟାଦି ବ୍ୟବହାର କରିବେ । |
| | ବସ୍ତୁତ୍ୱ(ଓଜନ) | ୩.୨.୫ | ପଥରଖଣ୍ଡ ଓ ଗୋଲିପରି ଅଣମାନକ ଏକକ ନେଇ ଖେଳନା ତରାଜୁ ସାହାଯ୍ୟରେ ନିକଟ ପରିବେଶର ବସ୍ତୁମାନଙ୍କର ବସ୍ତୁତ୍ୱ ବା ଓଜନ ନିର୍ଣ୍ଣୟ କରିବେ । |
| | ଧାରକତ୍ୱ | ୩.୨.୬ | କପ୍, ଗ୍ଲାସ୍ ଓ ବୋତଲ ଭଳି ଅଣମାନକ ଏକକ ସାହାଯ୍ୟରେ ଧାରକତ୍ୱ ମାପିବେ । |
| | ସମୟ | ୩.୨.୭ | ଦିନ ଓ ସପ୍ତାହ ମଧ୍ୟରେ, ସପ୍ତାହ ଓ ମାସ ମଧ୍ୟରେ ଏବଂ ମାସ ଓ ବର୍ଷ ମଧ୍ୟରେ ସମ୍ପର୍କ ଜାଣିବେ । |
| | | ୩.୨.୮ | ମାସ ଗୁଡ଼ିକର କ୍ରମିକ ନାମ ଜାଣିବେ । |

| କ୍ର. ନଂ. | ପ୍ରସଙ୍ଗ | | ଦକ୍ଷତା |
|---|---|---|---|
| ୪. | ଜ୍ୟାମିତିକ ଆକାର ଓ ସ୍ଥାନ ସମ୍ବନ୍ଧୀୟ ସମ୍ପର୍କ ବୁଝିବା । | ୪.୨.୧ | କେବଳ ସମତଳବିଶିଷ୍ଟ, କେବଳ ବକ୍ରତଳବିଶିଷ୍ଟ ଓ ଉଭୟ ସମତଳ ଓ ବକ୍ରତଳ ବିଶିଷ୍ଟ ବସ୍ତୁଗୁଡ଼ିକର ନାମ କହିବେ । |
| | | ୪.୨.୨ | ସରଳରୈଖିକ ଧାର ବା ବକ୍ରଧାର ଥିବା ବସ୍ତୁଗୁଡ଼ିକୁ ବ୍ୟବହାର କରି ସାମତଳିକ ଚିତ୍ର ଯଥା- ଆୟତଚିତ୍ର, ତ୍ରିଭୁଜ ଓ ବୃତ୍ତ ଅଙ୍କନ କରିବେ । |
| | | ୪.୨.୩ | ନିଜ ପରିବେଶରେ ଥିବା ବିଭିନ୍ନ ପ୍ରକାରର କଠିନ ବସ୍ତୁଗୁଡ଼ିକୁ ଆକାର ଅନୁସାରେ ଚିହ୍ନିବେ ଓ ବିଭାଗୀକରଣ କରିବେ । (ଏହି ବସ୍ତୁଗୁଡ଼ିକର ଜ୍ୟାମିତିକ ନାମକରଣ ନ କରି) |

# ଗଣିତ ଖେଳ (ଦ୍ୱିତୀୟ ଗଣିତ)

| କ୍ର.ନଂ. | ପ୍ରସଙ୍ଗ | ଦକ୍ଷତା | ପିରିୟଡ଼୍ |
|---|---|---|---|
| ୧. | ପାଠ ସବୁଠୁ ମିଠା | ◆ ଦୁଇ ଦୁଇଟି, ପାଞ୍ଚ ପାଞ୍ଚଟି, ଦଶ ଦଶଟି କରି ଗଣିବେ ଗୋଟିଏ ସେଟ୍‌ରେ ମୋଟ୍ ବସ୍ତୁ ସଂଖ୍ୟା ନିର୍ଣ୍ଣୟ କରିବେ ।<br>(ସେଟ୍‌ରେ ମୋଟ ବସ୍ତୁ ସଂଖ୍ୟା ୧୦୦ରୁ ଅଧିକ ହେବନାହିଁ ।) | ୧୨ |
| ୨. | ମାଙ୍କଡ଼ ହେଲା ଘୋଡ଼ା | ◆ ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାର ସ୍ଥାନୀୟମାନ ବୁଝିବେ ୨୧ରୁ ୯୯ ପର୍ଯ୍ୟନ୍ତ ସଂଖ୍ୟା ଦଶକ ଓ ଏକକରେ ବିସ୍ତାରିତ ଭାବେ ପ୍ରକାଶ କରିବେ ଏବଂ ବିସ୍ତାରିତ ଆକାରକୁ ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟା ଭାବେ ପ୍ରକାଶ କରିବେ । | ୧୪ |
| ୩. | ଗଣିତର ମଜା | ◆ ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟାର ସ୍ଥାନୀୟମାନ ନିର୍ଣ୍ଣୟ କରିବେ । | |
| ୪. | ଦୌଡ଼ ପ୍ରତିଯୋଗିତା | ◆ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭଳି ପ୍ରଥମରୁ ଦଶମ ପର୍ଯ୍ୟନ୍ତ ପୂରଣ ବାଚକ ସଂଖ୍ୟା ଗୁଡ଼ିକୁ ବୁଝିବେ । | ୧୪ |
| ୫. | ଆଖି ଡାକ୍ତର ବାଦୁଡ଼ି | ◆ ଦୁଇଟି ବା ତିନିଟି ଦୁଇ ଅଙ୍କ ଓ ଏକ ଅଙ୍କ ବା କେବଳ ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟା ଗୁଡ଼ିକୁ ଯୋଗ କରିବେ ଯେପରିକି ଯୋଗଫଳ ୯୯ରୁ ଅଧିକ ନହୁଏ(ଏକକ ଘରୁ ସଂଖ୍ୟା ନନେଇ ବା ନେଇ )<br>◆ ପୂର୍ବ ଦକ୍ଷତା ଦ୍ୱାରା ଏକ ସୋପାନରେ ସମାଧାନ ହେଲା ଭଳି ଦୈନନ୍ଦିନ ଜୀବନରେ ସମସ୍ୟା ସମାଧାନ କରିବେ । | ୩୦ |
| ୬. | ଥିଲା- ଗଲା= ରହିଲା | ◆ ଦଶକ ଘରୁ ସଂଖ୍ୟା ଧାର ନକରି ବା ଧାର କରି ଦୁଇ ଅଙ୍କ ବିଶିଷ୍ଟ ସଂଖ୍ୟା ମାନଙ୍କର ବିୟୋଗ କରିବେ ।<br>◆ ପୂର୍ବ ଦକ୍ଷତା ଦ୍ୱାରା ଏକ ସୋପାନରେ ସମାହିତ ହେଲା ଭଳି ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ କରିବେ ଓ ୧୮ ମଧ୍ୟରେ ମୌଖିକ ଭାବେ ସଂଖ୍ୟାର ବିୟୋଗ କରିବେ । | ୨୬ |

| କ୍ର. ନଂ. | ପ୍ରସଙ୍ଗ | ଦକ୍ଷତା | ପିରିୟଡ୍ |
|---|---|---|---|
| ୭. | ସୁନା ପିଲା | ◆ ବିଭିନ୍ନ ପ୍ରକାର ବାସ୍ତବ ଅଥବା ଖେଳଣା ମୁଦ୍ରା ମିଶାଇ ଏକ ଟଙ୍କା ମୂଲ୍ୟ ପର୍ଯ୍ୟନ୍ତ ହିସାବ କରିବେ ।<br>◆ ମୁଦ୍ରା ମାନଙ୍କର ମୂଲ୍ୟର ଯୋଗଫଳ ବା ବିୟୋଗଫଳ ଏକ ଟଙ୍କା ମଧରେ ସୀମିତ ନରଖି ଦୈନନ୍ଦିନ ଜୀବନର ସମସ୍ୟା ସମାଧାନ କରିବେ ।<br>◆ ପାଞ୍ଚ ପଇସା ଓ ଦଶ ପଇସାର ଗୁଣିତକ ମାନଙ୍କୁ ବ୍ୟବହାର କରି ଏକ ଟଙ୍କା ପର୍ଯ୍ୟନ୍ତ ହିସାବ କରି ଦୈନନ୍ଦିନ ଜୀବନର ସମସ୍ୟା ଗୁଡ଼ିକର ମୌଖିକ ସମାଧାନ କରିବେ । | ୧୪ |
| ୮. | କୁନା ନୂଆ କଥା ଜାଣିଲା | ◆ ୨, ୩, ୪, ୫, ୧୦ ଓ ୧କୁ ଗୁଣନୀୟକ ଭାବେ ନେଇ ଗୁଣନକୁ ଏକ ସଂଖ୍ୟାର ବାରମ୍ବାର ଯୋଗ ରୂପେ ବୁଝିବେ ।<br>ଗୁଣନ ଚିହ୍ନ (X)କୁ ଚିହ୍ନିବେ ଓ ବ୍ୟବହାର ହେବେ । ୧,୨,୩,୪,୫ ଏବଂ ୧୦ର ଗୁଣନ ଖନ୍ଦା ଗୁଡ଼ିକ ଲେଖିବେ ଓ ମନରଖିବେ ।<br>୧,୨,୩,୪,୫ ଏବଂ ୧୦ର ଗୁଣନ ଖନ୍ଦା ଗୁଡ଼ିକୁ ବ୍ୟବହାର କରି ଏକ ସୋପାନରେ ସମାହିତ ହେଉଥିବା ଦୈନନ୍ଦିନ ଜୀବନର ସମସ୍ୟାକୁ ସମାଧାନ କରିବେ । (କୌଣସି ଉତ୍ପାଦକ ବା ଗୁଣନୀୟକ ୧୦ରୁ ଅଧିକ ହେଉ ନଥିବ ।) | ୩୮ |
| ୯. | ରିଙ୍କୁ ଆଗ ମାପିଲା | ◆ ନିଜ ନିକଟ ପରିବେଶରେ ଥିବା ବସ୍ତୁ ଓ ସ୍ଥାନ ଗୁଡ଼ିକର ଦୈର୍ଘ୍ୟ ମାପିବା ପାଇଁ ଅଣମାନକ ଏକକ ଯଥା -ହାତ, ପାଦ, ବାଡ଼ି ଇତ୍ୟାଦି ବ୍ୟବହାର କରିବେ । | ୧୦ |
| ୧୦. | କାହା ପାଇଁ କେତେ | ◆ କପ୍, ଗ୍ଲାସ, ବୋତଲ ଭଳି ଅଣମାନକ ଏକକ ସାହାଯ୍ୟରେ ଧାରକତ୍ୱ ମାପିବେ । | ୧୦ |
| ୧୧. | ଗୋପାଳ ଦୋକାନୀ ହେଲା | ◆ ପଥର ଖଣ୍ଡ ଓ ଗୋଲି ପରି ଅଣମାନକ ଏକକ ନେଇ ଖେଳଣା ତରାଜୁ ସାହାଯ୍ୟରେ ନିକଟ ପରିବେଶର ବସ୍ତୁ ମାନଙ୍କର ବସ୍ତୁତ୍ୱ ବା ଓଜନ ନିର୍ଣ୍ଣୟ କରିବା । | ୧୦ |
| ୧୨. | ଚକା ଚକା ଭଉଁରୀ | ◆ ଦିନ ଓ ସପ୍ତାହ ମଧ୍ୟରେ, ସପ୍ତାହ ଓ ମାସ ମଧରେ ଏବଂ ମାସ ଓ ବର୍ଷ ମଧ୍ୟରେ ସଂପର୍କ ଜାଣିବେ । ମାସ ଗୁଡ଼ିକର କ୍ରମିକ ନାମ ଜାଣିବେ । | ୧୦ |
| ୧୩. | କହି ଦେଉଥାଇ ପରକୁ | ◆ କେବଳ ସମତଳ ବିଶିଷ୍ଟ, କେବଳ ବକ୍ରତଳ ବିଶିଷ୍ଟ ଓ ଉଭୟ ସମତଳ ଓ ବକ୍ରତଳ ବିଶିଷ୍ଟ ବସ୍ତୁ ଗୁଡ଼ିକର ନାମ ଚିହ୍ନିବେ ଓ କହିବେ । | ୦୮ |

| କ୍ର .ନଂ. | ପ୍ରସଙ୍ଗ | ଦକ୍ଷତା | ପିରିୟଡ୍ |
|---|---|---|---|
| ୧୪. | ନାଁ ଦେବି କ'ଣ | ◆ ସରଳ ରୈଖିକ ଧାର ବା ବକ୍ରଧାର ଥିବା ବସ୍ତୁ ଗୁଡ଼ିକୁ ବ୍ୟବହାର କରି ସାମତଳିକ ଚିତ୍ର ଯଥା- ଆୟତଚିତ୍ର, ତ୍ରିଭୁଜ ଓ ବୃତ୍ତ ଅଙ୍କନ କରିବେ। ନିଜର ପରିବେଶରେ ଥିବା ବିଭିନ୍ନ ପ୍ରକାରର କଠିନ ବସ୍ତୁ ଗୁଡ଼ିକୁ ଆକାର ଅନୁସାରେ ଚିହ୍ନିବେ ଓ ବିଭାଗୀକରଣ କରିବେ (ଏହି ବସ୍ତୁ ଗୁଡ଼ିକର ଜ୍ୟାମିତିକ ନାମକରଣ ନକରି) | ୦୮ |
| ୧୫. | ପୁଅ ଝିଅ ସମାନ | ◆ ଅଧା ଓ ଚଉଠର ଧାରଣା ପାଇବେ । | ୦୭ |

# ଦ୍ୱିତୀୟ ଶ୍ରେଣୀ (ଗଣିତ ଖେଳ)

| ମାସ | ସପ୍ତାହ | ପ୍ରସଙ୍ଗ | ପିରିୟଡ୍ |
|---|---|---|---|
| ଜୁନ୍ | ୪ | ପୂର୍ବ ପାଠର ଆଲୋଚନା (୪) | ୪ |
| ଜୁଲାଇ | ୧ | ପାଠ ସବୁଠୁ ମିଠା (୬) | ୬ |
| | ୨ | ପାଠ ସବୁଠୁ ମିଠା (୬)<br>ମାଙ୍କଡ଼ ହେଲା ଘୋଡ଼ା (୨) | ୮ |
| | ୩ | ମାଙ୍କଡ଼ ହେଲା ଘୋଡ଼ା (୬) | ୬ |
| | ୪ | ଗଣିତର ମଜା (୬)<br>ପ୍ରଥମ ଏକକ ପରୀକ୍ଷଣ | ୬ |
| ଅଗଷ୍ଟ | ୧ | ଦୌଡ଼ ପ୍ରତିଯୋଗିତା (୬) | ୬ |
| | ୨ | ଦୌଡ଼ ପ୍ରତିଯୋଗିତା (୬) | ୬ |
| | ୩ | ଦୌଡ଼ ପ୍ରତିଯୋଗିତା (୨)<br>ଆଖି ଡାକ୍ତର ବାଦୁଡ଼ି (୪) | ୬ |
| | ୪ | ଆଖି ଡାକ୍ତର ବାଦୁଡ଼ି (୬) | ୬ |
| ସେପ୍ଟେମ୍ବର | ୧ | ଆଖି ଡାକ୍ତର ବାଦୁଡ଼ି (୬)<br>ଦ୍ୱିତୀୟ ଏକକ ପରୀକ୍ଷଣ | ୬ |
| | ୨ | ଆଖି ଡାକ୍ତର ବାଦୁଡ଼ି (୮) | ୮ |
| | ୩ | ଆଖି ଡାକ୍ତର ବାଦୁଡ଼ି (୬) | ୬ |
| | ୪ | ଥିଲା - ଗଲା = ରହିଲା (୬) | ୬ |

| ମାସ | ସପ୍ତାହ | ପ୍ରସଙ୍ଗ | ପିରିୟଡ୍ |
|---|---|---|---|
| ଅକ୍ଟୋବର | ୧ | ଥିଲା - ଗଲା = ରହିଲା (୬) | ୬ |
| | ୨ | ଥିଲା - ଗଲା = ରହିଲା (୮) | ୮ |
| | ୩ | ଥିଲା - ଗଲା = ରହିଲା (୬)<br>ତୃତୀୟ ଏକକ ପରୀକ୍ଷଣ | ୬ |
| | ୪ | ଦଶହରା ଛୁଟି | |
| ନଭେମ୍ବର | ୧ | ସୁନା ପିଲା (୬) | ୬ |
| | ୨ | ସୁନା ପିଲା (୬) | ୬ |
| | ୩ | ସୁନା ପିଲା (୨)<br>ପୁନରାବୃତ୍ତି (୪) | ୬ |
| | ୪ | ଷାଣ୍ମାସିକ ପରୀକ୍ଷା | |
| ଡିସେମ୍ବର | ୧ | କୁନା ନୂଆ କଥା ଜାଣିଲା (୬) | ୬ |
| | ୨ | କୁନା ନୂଆ କଥା ଜାଣିଲା (୫) | ୫ |
| | ୩ | କୁନା ନୂଆ କଥା ଜାଣିଲା (୩) | ୩ |
| | ୪ | ଧାନକଟା ଛୁଟି | |
| ଜାନୁଆରୀ | ୧ | କୁନା ନୂଆ କଥା ଜାଣିଲା (୬) | ୬ |
| | ୨ | କୁନା ନୂଆ କଥା ଜାଣିଲା (୬)<br>ଚତୁର୍ଥ ଏକକ ପରୀକ୍ଷଣ | ୬ |
| | ୩ | କୁନା ନୂଆ କଥା ଜାଣିଲା (୬) | ୬ |
| | ୪ | କୁନା ନୂଆ କଥା ଜାଣିଲା (୬) | ୬ |

| ମାସ | ସପ୍ତାହ | ପ୍ରସଙ୍ଗ | ପିରିୟଡ୍ |
|---|---|---|---|
| ଫେବୃଆରୀ | ୧ | ରିଙ୍କୁ ଆଗ ମାପିଲା (୮) | ୮ |
| | ୨ | ରିଙ୍କୁ ଆଗ ମାପିଲା (୨)<br>କାହା ପାଇଁ କେତେ (୪)<br>ପଞ୍ଚମ ଏକକ ପରୀକ୍ଷଣ | ୬ |
| | ୩ | କାହା ପାଇଁ କେତେ (୬) | ୬ |
| | ୪ | ଗୋପାଳ ଦୋକାନୀ ହେଲା (୬) | ୬ |
| ମାର୍ଚ୍ଚ | ୧ | ଗୋପାଳ ଦୋକାନୀ ହେଲା (୪)<br>ଚକା ଚକା ଭଉଁରୀ (୪) | ୮ |
| | ୨ | ଚକା ଚକା ଭଉଁରୀ (୬)<br>ଷଷ୍ଠ ଏକକ ପରୀକ୍ଷଣ | ୬ |
| | ୩ | କହି ଦେଉଥାଇ ପରକୁ (୮) | ୮ |
| | ୪ | ନାଁ ଦେବି କ'ଣ (୫) | ୫ |
| ଏପ୍ରିଲ୍ | ୧ | ନାଁ ଦେବି କ'ଣ (୩)<br>ପୁଅ ଝିଅ ସମାନ (୨) | ୫ |
| | ୨ | ପୁଅ ଝିଅ ସମାନ (୫) | ୫ |
| | ୩ | ପୁନରାବୃତ୍ତି (୫) | ୫ |
| | ୪ | ବାର୍ଷିକ ପରୀକ୍ଷା | |
| ମଇ | | ବାର୍ଷିକ ପରୀକ୍ଷା ପ୍ରଶ୍ନ ପତ୍ରର ପୁନରାଲୋଚନା | |

